ଜାନୁଆରୀ ତରୁଣ



ସଂସାରର ଶ୍ରଦ୍ଧାଞ୍ଜଳି

# ସୂଚୀ



ଚତୁର୍ଥ ବର୍ଷ ● ଫେବୃୟାରୀ, ୧୯୫୫ ● ସପ୍ତମ ସଂଖ୍ୟା

# ଟେଲିଭିଜୋଫୋନ୍

ଶ୍ରୀ ବିପିନ ବିହାରୀ ମହାନ୍ତି

ଟେଲିଫୋନ୍ ଓ ଟେଲିଭିଜନ୍ ପରେ ବୈଜ୍ଞାନିକମାନେ ଟେଲିଭିଜୋଫୋନ୍ ନିମନ୍ତେ ଅଦମ୍ୟ ଚେଷ୍ଟା ଚଳେଇଛନ୍ତି । ଏହା ଏକ ଅତି ଉନ୍ନତ ଫୋନ୍-ପ୍ରଣାଳୀ ଯାହାଦ୍ୱାରା ଫୋନ୍‌ରେ କଥାବାର୍ତ୍ତା କରୁଥିବା ବ୍ୟକ୍ତି ପରସ୍ପରକୁ ଡାଏଲ୍‌ରେ ଦେଖିବାକୁ ପାଇବେ ।

କେତେକ ଇଞ୍ଜିନିୟାର, ଗଣିତଜ୍ଞ, ଭୌତିକଶାସ୍ତ୍ରୀ ପ୍ରଭୃତି ଟେଲିଭିଜୋଫୋନ୍ ତିଆରି କରିବାରେ ଲାଗିଛନ୍ତି ଏବଂ ଆଶାକରାଯାଏ ଶୀଘ୍ର ଟେଲିଭିଜୋଫୋନ, ଟେଲିଫୋନର ସ୍ଥାନ ଅଧିକାର କରିବ । ଏହାର କଳ୍ପନା ଓ ଏହା ସମ୍ବନ୍ଧରେ ଏପର୍ଯ୍ୟନ୍ତ ହୋଇଥିବା କାର୍ଯ୍ୟର ପୃଷ୍ଠଭୂମି ହେଉଛି ଆମେରିକାର "ବେଲ୍ ଟେଲିଫୋନ୍-ପ୍ରୟୋଗଶାଳା ।" ବେଲ୍ ପ୍ରୟୋଗଶାଳାର ଏହା ଯେ ପ୍ରଥମ ପ୍ରୟାସ ତାହା ନୁହେଁ ବରଂ ଏହି ପ୍ରୟୋଗଶାଳା ସର୍ବଦା ଟେଲିଫୋନ୍‌ର ଭବିଷ୍ୟତ ଦ୍ରଷ୍ଟା ହୋଇ ଆସିଅଛି । ଏହି ପ୍ରୟୋଗଶାଳାରେ ଇଞ୍ଜିନିୟାର, ଗଣିତଜ୍ଞ, ଭୌତିକଶାସ୍ତ୍ରୀ ପ୍ରଭୃତି ମିଶି ୨୩୦ ଜଣ ବ୍ୟକ୍ତି ସର୍ବଦା ଚିନ୍ତାମଗ୍ନ ରହନ୍ତି ଓ ଭୌତିକ ଜଗତର ଭବିଷ୍ୟତରେ ଆବଶ୍ୟକୀୟ ପଦାର୍ଥ ସମ୍ବନ୍ଧରେ ସର୍ବଦା କଳ୍ପନା କରି ନିଜର ଅଦ୍ଭୁତ ପ୍ରତିଭା ବିକଶିତ କରିବାରେ ସଫଳ ହୁଅନ୍ତି ।

ଟେଲିଭିଜୋଫୋନ୍‌ର କଳ୍ପନା ଆଜକୁ ପ୍ରାୟ ୪୦ ବର୍ଷ ପୂର୍ବେ ହୋଇଥିଲା ଯେତେବେଳେ ବେଲ୍-ପ୍ରୟୋଗଶାଳାରେ ସର୍ବପ୍ରଥମେ ଏହି ବିଷୟରେ କଳ୍ପନା କରାଗଲା ଯେ ଟେଲିଫୋନ୍‌କୁ ସ୍ୱତଶ୍ଚଳ (Automatic) କରିବାକୁ ହେବ । ପ୍ରକୃତରେ ବର୍ତ୍ତମାନ ଅଧିକାଂଶ ବଡ଼ ବଡ଼ ସହରରେ ଟେଲିଫୋନ୍ କଲାବେଳେ ଯେଉଁ ନମ୍ବରରେ କଥାବାର୍ତ୍ତା ହେବା ଦରକାର ଡାଏଲ୍ ଦ୍ୱାରା ନିଜେ ସେହି ନମ୍ବର ପାଇ ଯେ କେହି କଥାବାର୍ତ୍ତା କରି ପାରୁଛନ୍ତି । କେବଳ ଆମେରିକାରେ ପାଞ୍ଚକୋଟି ଟେଲିଫୋନ୍ ରହିଛି ଏବଂ ବର୍ଷ ମଧ୍ୟରେ ପ୍ରାୟ ୫୬୦୦ କୋଟି ଥର କଥାବାର୍ତ୍ତା ହୋଇଥାଏ । ଯଦି ସେଥିରେ ଡାଏଲ-ଯନ୍ତ୍ର ନ ଥା'ନ୍ତା ତାହାହେଲେ ଏତେଥର କଥାବାର୍ତ୍ତାର ନିୟନ୍ତ୍ରଣ ରକ୍ଷା କରିବାକୁ ଅନ୍ତତଃ ୧୫ ଲକ୍ଷ ଅପରେଟର୍ ଆବଶ୍ୟକ ହୁଅନ୍ତେ ।

ଟେଲିଫୋନ୍‌କୁ ସ୍ୱତଶ୍ଚଳ କରିବାରେ ସଫଳ ହୋଇ ଟେଲିଭିଜୋଫୋନ୍ ପ୍ରତି ଚେଷ୍ଟା ଚଳାଇବାବେଳେ ୧୯୨୭ ରେ ହର୍ବାର୍ଟ ଆଇନ୍‌ସ ଏବଂ ତାଙ୍କର ସହକର୍ମୀମାନେ ବେଲ୍ ପ୍ରୟୋଗଶାଳାରେ ଟେଲିଭିଜନ୍ ଆବିଷ୍କାର କଲେ । ଆଜି ଆମେରିକାରେ ଟେଲିଭିଜନ୍

ଅତ୍ୟନ୍ତ ଲୋକପ୍ରିୟ ହୋଇଛି । ଟେଲିଭିଜନ୍‌ରେ କଥା କହୁଥିବା ବ୍ୟକ୍ତି ଓ ଦୃଶ୍ୟ ସବୁ ପ୍ରଥମେ କେମେରା ଦ୍ୱାରା ଶବ୍ଦରେ ପରିବର୍ତ୍ତନ କରାଯାଏ ଓ ଏହି ଶବ୍ଦଗୁଡ଼ିକ ପରେ ବିଦ୍ୟୁତ୍ ତରଙ୍ଗରେ ମଧ୍ୟ ପରିବର୍ତ୍ତିତ ହୁଏ । କଥାବାର୍ତ୍ତାର ଧ୍ୱନି-ତରଙ୍ଗଗୁଡ଼ିକ ବିଦ୍ୟୁତ୍‌ତରଙ୍ଗରେ ପରିବର୍ତ୍ତନ କରିବାକୁ ଟେଲିଭିଜନ୍ ଷ୍ଟେସନରେ ଏକ ସ୍ୱତନ୍ତ୍ର ରେଡ଼ିଓ-ପ୍ରକ୍ଷେପକ ରହେ । ଶବ୍ଦଗୁଡ଼ିକର ପରିବର୍ତ୍ତିତ ଏହି ବିଦ୍ୟୁତ୍ ତରଙ୍ଗକୁ ରେଡ଼ିଓ-ପ୍ରକ୍ଷେପକରୁ ବାହାରୁଥିବା ଧ୍ୱନି-ତରଙ୍ଗର ପରିବର୍ତ୍ତିତ ବିଦ୍ୟୁତ୍ ତରଙ୍ଗ ସହିତ ଏରିଆଲ୍ ସାହାଯ୍ୟରେ ବାୟୁମଣ୍ଡଳରେ ଛାଡ଼ି ଦିଆଯାଏ । ଏହି ଯନ୍ତ୍ରକୁ "ଟେଲିଭିଜନ୍-ପ୍ରକ୍ଷେପକ" କହନ୍ତି । ଏହି ଯନ୍ତ୍ର ବ୍ୟକ୍ତି ଓ ଦୃଶ୍ୟ ସବୁର ଶବ୍ଦ ଏବଂ କଥାବାର୍ତ୍ତାଗୁଡ଼ିକୁ ବିଦ୍ୟୁତ୍ ତରଙ୍ଗରେ ପରିବର୍ତ୍ତନ କରେ । ଟେଲିଭିଜନ୍-ସଂଗ୍ରାହକ ଯାହାକୁ "ଟେଲିଭିଜନ୍ ସେଟ୍" କହନ୍ତି, କଥାବାର୍ତ୍ତା ଓ ଶବ୍ଦଗୁଡ଼ିକର ବିଦ୍ୟୁତ୍ ତରଙ୍ଗକୁ ପୁଣି କ୍ରମଶଃ ଧ୍ୱନିତରଙ୍ଗ ଓ ଶବ୍ଦରେ ପରିଣତ କରେ । ପ୍ରଥମେ ଶବ୍ଦଗୁଡ଼ିକୁ ବିଦ୍ୟୁତ୍ ତରଙ୍ଗରେ ବଦଳାଇ କୌଣସି ନିର୍ଦ୍ଦିଷ୍ଟ ସ୍ଥାନ ପର୍ଯ୍ୟନ୍ତ ପହଞ୍ଚାଇବାକୁ ତାର ଆବଶ୍ୟକ ହେଉଥିଲା କିନ୍ତୁ ବର୍ତ୍ତମାନ ଏହି ବିଦ୍ୟୁତ୍ ତରଙ୍ଗକୁ ପ୍ରାୟ ୩୦୦ ମାଇଲ ପର୍ଯ୍ୟନ୍ତ ବେତାର ଦ୍ୱାରା ମଧ୍ୟ ପଠାଇବା ସମ୍ଭବ ହୋଇ ପାରିଛି ।

ଏ ସଂକ୍ରାନ୍ତରେ ବୈଜ୍ଞାନିକମାନେ ଅଧିକ ଅଗ୍ରସର ହେବାକୁ ଗଲାବେଳେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହେଲା ଏବଂ ତାର-ବିଭାଗରେ "କେରିୟାର୍-ପଦ୍ଧତି" ଆରମ୍ଭ ହେଲା । ଏହି ପଦ୍ଧତି ଦ୍ୱାରା ଗୋଟିଏ ତାର ସାହାଯ୍ୟରେ ୩୦।୪୦ ବାର୍ତ୍ତା ଏକ ସାଙ୍ଗରେ ପଠାଇବା ସମ୍ଭବ ହେଲା ଓ ଏହାପରେ ଆମେରିକାର ଏକ ନଗରରୁ ଅନ୍ୟଟିକୁ ଟେଲିଫୋନ୍ କରିବା ନିମନ୍ତେ ସ୍ୱତଶ୍ଚଳ ଟେଲିଫୋନ୍ ତିଆରି ହେଲା । କେବଳ ଟେଲି-ଫୋନ୍‌ର ଡାଏଲ୍‌ରେ ଥିବା ତିନୋଟି ନମ୍ବରକୁ ଘୂରେଇବାରେ ଏକ ନଗରରୁ ଅନ୍ୟ ନଗର ସହିତ ସହଜରେ କଥାବାର୍ତ୍ତା କରିହେଲା । ଟେଲିଫୋନ୍ ସ୍ୱତଶ୍ଚଳ ହେବାପରେ ଡାଏଲ୍ ଦ୍ୱାରା ଅନେକ କାର୍ଯ୍ୟ ହାସଲ ହେଲା । ମାସକ ମଧ୍ୟରେ ଟେଲିଫୋନ୍ କେତେଘଣ୍ଟା ବ୍ୟବହୃତ ହୋଇଛି ଏବଂ ସେଥିପାଇଁ କେତେ ଟଙ୍କା ବିଲ୍ ବାବଦ ଦେବାକୁ ହେବ, ଏ ସମସ୍ତ ମଧ୍ୟ ଡାଏଲ୍‌ରୁ ମିଳିଲା ।

ଏହାପରେ ଚିନ୍ତା ହେଲା ଯେ କଣ କଲେ ଟେଲିଫୋନ୍‌ରେ ରିଙ୍ଗ୍ ଆସିଲାବେଳେ କେହି ଯଦି ଘରେ ନ ଥାନ୍ତି ବା ଘର ବନ୍ଦ ଥାଏ, ଟେଲିଫୋନ୍ ନିଜେ ଫୋନ୍‌ରେ ଡାକୁଥିବା ବ୍ୟକ୍ତିଙ୍କର ଠିକଣା ଓ କଥାଗୁଡ଼ିକ ଡାଏଲ୍‌ରେ ଲେଖି ରଖିବ, ଯାହାଦ୍ୱାରା ଅନୁପସ୍ଥିତ ବ୍ୟକ୍ତି ଘରକୁ ଫେରି ସବୁ ଅବଗତ ହେବେ ଏବଂ ସେ ଇଚ୍ଛାକଲେ ନିଜକଥା ଫୋନ୍ ପାଖରେ ରଖିଦେଲେ ଫୋନ୍ ଉକ୍ତ ବାର୍ତ୍ତା ନିଜେ ଆବଶ୍ୟକୀୟ ଲୋକଙ୍କ ନିକଟରେ ପହଞ୍ଚାଇ ପାରିବ । ଏହି ଚିନ୍ତାରୁ ଟେଲିଭିଜୋଫୋନ୍‌ର ମୂଳଦୁଆ ପଡ଼ିଛି ଏବଂ ଆମେରିକାର ବୈଜ୍ଞାନିକ ଏ ସମ୍ବନ୍ଧରେ ଅନେକ ଅଗ୍ରସର ହେଲେଣି । ଆଜିକାଲି ଏପରି ଟେଲିଫୋନ୍ ତିଆରି କରିବାର ଚେଷ୍ଟା ହେଉଛି ଯେ ଟେଲିଫୋନ୍‌କୁ ନ ଧରି କେବଳ ଆଦେଶ ଦେଲେ ଆପଣା ଛାଏଁ ଟେଲିଫୋନ୍ ଯେଉଁଠାକୁ ଇଚ୍ଛା କଥା କହିବା ନିମନ୍ତେ ସମ୍ବନ୍ଧ ସ୍ଥାପନ କରିଦେବ ।

ବେଲ୍ ପ୍ରୟୋଗଶାଳାର ବିଶେଷଜ୍ଞମାନେ ଅତ୍ୟନ୍ତ ଉତ୍ସାହର ସହିତ ଟେଲିଭିଜୋଫୋନ୍ ନିମନ୍ତେ ଏକ ପ୍ରାରମ୍ଭିକ ନକ୍ସା ପ୍ରସ୍ତୁତ କରିଛନ୍ତି । ଆଶା କରାଯାଏ, ନିକଟ ଭବିଷ୍ୟତରେ ଟେଲିଭିଜୋଫୋନ୍ ଏତେ ସରଳ ଓ ସୁଗମ ହୋଇପାରିବ ଯେ ଟେଲିଫୋନ୍‌ରେ କଥା-ବାର୍ତ୍ତା କରୁଥିବା ବ୍ୟକ୍ତି ପରସ୍ପରକୁ ଦେଖିବା ସଙ୍ଗେ-ସଙ୍ଗେ ପାଖ ଆଖର ଅଧିକାଂଶ ଦୃଶ୍ୟଗୁଡ଼ିକ ମଧ୍ୟ ଦେଖିବାକୁ ସମର୍ଥ ହେବେ ।



# ନୂଆ ପ୍ରକାର କଂକ୍ରିଟ

ଶ୍ରୀ ସୁଧାକର ଦାସ, ବି.ଏସସି., ନୂଆଦିଲ୍ଲୀ

ଖଣ୍ଡିଏ ସରୁ ରବର ଦୁଇ ହାତରେ ଧରି ଟାଣ । ତାହା ଲମ୍ବା ହୋଇଗଲା ତ ? ବର୍ତ୍ତମାନ ଗୋଟିଏ ପାଖ ଛାଡ଼ିଦେଲେ ଆଉ ହାତରେ ରବର ଟାଂଏ କରି ବାଜିବ ନାହିଁକି ? କାରଣ ରବର ତା ନିଜ ଦୈର୍ଘ୍ୟତାକୁ ଫେରିଯାଏ । ଠିକ୍ ଏହି ନୀତି ପ୍ରିଷ୍ଟ୍ରେସ୍‌ଡ୍ (Prestressed) କଂକ୍ରିଟ୍‌ରେ ବ୍ୟବହୃତ ହୋଇ ଅଛି ।

ପ୍ରିଷ୍ଟ୍ରେସ୍‌ଡ୍‌ର ଅର୍ଥ ହେଉଛି ପୂର୍ବରୁ ଚାପଦିଆ ବା ପୂର୍ବରୁ ଟଣା । ରବର ପରି ତାରକୁ ଟାଣିଲେ ତାହା ମଧ୍ୟ ଲମ୍ବା ହୋଇଯାଏ ଏବଂ ଛାଡ଼ିଦେଲେ ପୁଣି ପୂର୍ବ ଲମ୍ବକୁ ଫେରି ଆସେ । ଉପରୋକ୍ତ କଂକ୍ରିଟ୍ ପାଇଁ ଲୁହାତାର ବ୍ୟବହାର କରାଯାଏ । କାର୍ଯ୍ୟସ୍ଥଳରେ ଏହି ଲୁହାତାରକୁ ଜୋର୍‌ରେ ମେସିନ୍ ସାହାଯ୍ୟରେ ଟାଣି ବାନ୍ଧି ଦିଆହୁଏ । ଏଥିପାଇଁ ଅବଶ୍ୟ ଯେକୌଣସି ନିହା ତାର ହେବ ନାହିଁ । ଏହା ଯେପରି ପ୍ରଚୁର ଟଣା (tension) ସହି ପାରୁଥିବ । ସେଥିପାଇଁ ସ୍ୱତନ୍ତ୍ର ତାର ବ୍ୟବହାର କରାଯାଇ ଥାଏ । ଏହି ତାର ବର୍ତ୍ତମାନ ଭାରତରେ ଅବଶ୍ୟ ପ୍ରସ୍ତୁତ ହେଉନାହିଁ । ଇଂଲଣ୍ଡରୁ ଆମଦାନି ହୁଏ । ତାରକୁ ଦୁଇପାଖରେ ଟାଣି ବାନ୍ଧି ତା ଉପରେ କଂକ୍ରିଟ୍ ପକାଯାଏ । କଂକ୍ରିଟ୍ ଶକ୍ତ ହୋଇଗଲେ ତାର ଦୁଇପାଖରୁ କାଟି ଦିଆଯାଏ । ବର୍ତ୍ତମାନ ଟାଣିରହିଥିବା ତାର ତାହାର ପୂର୍ବର ସ୍ୱାଭାବିକ ଲମ୍ବକୁ ଫେରିଯିବା କଥା; କିନ୍ତୁ ତାରର ଅଧିକାଂଶ କଂକ୍ରିଟ୍ ମଧ୍ୟରେ ରହିଯାଇ ଥିବାରୁ ସମସ୍ତ ଚାପ କଂକ୍ରିଟ୍ ଉପରେ ଦୁଇପାଖରୁ ପଡ଼େ । ଏଥିରେ କଂକ୍ରିଟ୍‌ର ଶକ୍ତି ଅନେକ ବଢିଯାଏ ।

ଯଦି କଂକ୍ରିଟ୍ ଉପଯୁକ୍ତ ଭାବରେ ଶକ୍ତ ହେବା ପୂର୍ବରୁ ତାର କାଟିଦିଆଯାଏ, ତେବେ କଂକ୍ରିଟ୍‌ର ଶକ୍ତି ବଢେ ନାହିଁ । ଏ ସମୟରେ ତାର କଂକ୍ରିଟ୍ ମଧ୍ୟରେ ଖୋଲା ରହିଥାଏ । ସୁତରାଂ ତାର କଟାହେଲେ କଂକ୍ରିଟ୍ ମଧ୍ୟରେ ଥିବା ତାର ମଧ୍ୟ ତାର ପୂର୍ବ ଲମ୍ବକୁ ଚାଲିଯାଏ । କଂକ୍ରିଟ୍ କୌଣସି ଅଧିକା ଶକ୍ତି ଲାଭ କରି ପାରେନା । ସେଥିପାଇଁ କଂକ୍ରିଟ୍‌ର ଶକ୍ତି ବର୍ଗ ଇଞ୍ଚ ପ୍ରତି ୪୨୦୦ ପାଉଣ୍ଡ ହେଲେ ତାର କଟାଯିବାର ନିର୍ଦ୍ଦେଶ ଅଛି ।

ଉପରୋକ୍ତ ପ୍ରଣାଳୀ ଦ୍ୱାରା ଏବେ କୋଠାର କଡ଼ି, ବିଜୁଳିଖମ୍ବ, ଉଚ୍ଚଶକ୍ତି ବିଜୁଳିଖମ୍ବ ଆଦି ତିଆରି କରାଯାଉଛି ଏପ୍ରଣାଳୀରେ ତିଆରି ହୋଇଥିବା କଡ଼ି ସହଜେ ଭାଙ୍ଗେ ନାହିଁ । ଏହା ଉପରେ କୌଣସି ବୋଝ ରଖିଲେ ଏହା ଅତି ସାମାନ୍ୟ ନଇଁ ଯାଇପାରେ ଏବଂ ବୋଝ କାଢିନେଲେ ଏହା ପୁଣି ସିଧା ହୋଇଯାଏ । କିନ୍ତୁ ଏହା କେବେ ହେଲେ ଭାଙ୍ଗିବ ନାହିଁ ବା ଏଥିରେ ଫାଟ ହେବ ନାହିଁ ।

ଏହା ପୂର୍ବରୁ କଂକ୍ରିଟ୍ କଡ଼ରେ ଲୁହା ଛଡ଼ ଦିଆହୋଇ ତିଆରି ହେଉଥିଲା । ଏଥିରେ ବେଶୀ କଂକ୍ରିଟ୍ ଓ ଲୁହା ଲାଗୁଥିବାରୁ ଅନେକ ଓଜନଦାର ହୋଇଥାଏ । ଏହି କଡ଼ର ତଳପାଖରେ ଫାଟ ହେବାର ଆଶଙ୍କା ମଧ୍ୟ ଥାଏ ।

ପ୍ରିଷ୍ଟ୍ରେସ୍‌ଡ୍ କଡ଼ଗୁଡ଼ିକ ବି ଲୁହା କଡ଼ଠାରୁ ଢେର୍ ଶସ୍ତା । ପ୍ରାୟ ୧୦ଫୁଟର ଏକ ଗ୍ଲେଟ କଡ଼ି ଦଶଟଙ୍କାରେ ମିଳିପାରିବ । ଏହା ମଧ୍ୟ ଅନ୍ୟାନ୍ୟ ଲୁହା ଓ କଂକ୍ରିଟ୍ କଡ଼ି ଅପେକ୍ଷା ହାଲୁକା ।

ପ୍ରିଷ୍ଟ୍ରେସ୍‌ଡ୍ କଂକ୍ରିଟ୍ ଫ୍ରାନ୍ସର ମନ୍‌ସିଓର ଫ୍ରିଜ୍‌ନେଟ୍‌ଙ୍କ ଦ୍ୱାରା ଆବିଷ୍କୃତ । ସେଥିପାଇଁ ଯେଉଁମାନେ ତାଙ୍କର ଏହି ପ୍ରଣାଳୀ ବ୍ୟବହାର କରିବେ ସେମାନେ ତାଙ୍କୁ ରୟାଲ୍‌ଟି ଦେବାକୁ ବାଧ୍ୟ ହେବେ । ଭାରତରେ ଏହି ପ୍ରଣାଳୀ ୩ବର୍ଷ ହେଲା ଆରମ୍ଭ ହୋଇଛି ମାତ୍ର ।



# ଗାନ୍ଧି ସଂଗ୍ରହଶାଳା (Museum)

ଶ୍ରୀ ବାସୁଦେବ ତ୍ରିପାଠୀ ବି.ଏ., ଡି.ଇଡି

ପୂଜ୍ୟନେତା ଗାନ୍ଧିଜୀଙ୍କ ମୃତ୍ୟୁପରେ ଭାରତର ଜନସାଧାରଣଙ୍କ ମନରେ ଘୋର ଦୁଃଖ, ଅବସାଦ ଆସି ପହଞ୍ଚିବାରୁ ଲୋକେ ତାଙ୍କ ପ୍ରତିଭା ପୂଜାପାଇଁ ବିଶେଷ ଉଦ୍‌ବିଗ୍ନ ହୋଇ ପଡିଲେ । କେତେକ ଉଦ୍ୟୋକ୍ତା ଭାରତର ଚତୁର୍ଦ୍ଦିଗରୁ ଏଗାର କୋଟି ଟଙ୍କା ଚାନ୍ଦାରୂପେ ସଂଗ୍ରହ କଲେ । ସେହି ଟଙ୍କାରେ ଗାନ୍ଧିଜୀଙ୍କ ସ୍ମୃତିରକ୍ଷା ଉଦ୍ଦେଶ୍ୟରେ ବିଭିନ୍ନ ଅନୁଷ୍ଠାନ ଗଢ଼ା ଯିବାର ସ୍ଥିର ହୋଇ ଏବେ କାର୍ଯ୍ୟାରମ୍ଭ ହେଲାଣି । ଏକ କେନ୍ଦ୍ର ମ୍ୟୁଜିୟମ୍ ୪୫ ଏକର ଜମିରେ ଦିଲ୍ଲୀଠାରେ ପ୍ରତିଷ୍ଠା ହେବାର କଳ୍ପନା କରାଯାଇଅଛି । ଏହା ଗାନ୍ଧୀଜୀଙ୍କ ସମାଧି ଘାଟର ଖୁବ୍ ନିକଟରେ । ଏଥି ନିମନ୍ତେ ଯେଉଁ କମିଟି ଗଠିତ ହୋଇଅଛି, ତାହାଙ୍କ ନିଷ୍ପତ୍ତିରେ ଏଥିରେ ପ୍ରାୟ କୋଡ଼ିଏ ଲକ୍ଷ ଟଙ୍କା ବ୍ୟୟିତ ହେବାର ସିଦ୍ଧାନ୍ତ ହୋଇଅଛି । ବର୍ତ୍ତମାନ ୭୭,୦୦୦ ଟଙ୍କା ବ୍ୟୟରେ ଜମିଗୁଡ଼ିକ ସମତଳ କରା ଗଲାଣି । ଗାନ୍ଧିଜୀଙ୍କ ସମାଧି ସମ୍ପୂର୍ଣ୍ଣ ହେଲାଣି । ଏକ୍ଷଣି ଉକ୍ତ ମ୍ୟୁଜିୟମର କାର୍ଯ୍ୟ କ୍ଷିପ୍ର ଗତିରେ ଚାଲିବ ବୋଲି ବିଶ୍ୱାସ କରାଯାଏ ।

ଭାରତର ବିଭିନ୍ନ ଅଞ୍ଚଳରେ ଚାରିଗୋଟି ମ୍ୟୁଜିୟମ୍ ପ୍ରତିଷ୍ଠିତ ହେବ ବୋଲି ସ୍ଥିର ହୋଇଅଛି । କାରଣ ଗାନ୍ଧିଜୀଙ୍କ ଜୀବନର କାର୍ଯ୍ୟ ସହିତ ନିମ୍ନଲିଖିତ ସ୍ଥାନଗୁଡ଼ିକ ଓତପ୍ରୋତ ଭାବେ ସଂଶ୍ଳିଷ୍ଟ । ଗାନ୍ଧିଜୀ ଦକ୍ଷିଣ ଆଫ୍ରିକାରୁ ଫେରିଆସିବା ପରେ ଆହମଦାବାଦ୍‌ଠାରେ ଥିବା ସାବରମତୀ ଆଶ୍ରମରେ ଦୀର୍ଘ ୧୫ ବର୍ଷ କାଳ କଟାଇ ନାନା ସଂଗଠନମୂଳକ କାର୍ଯ୍ୟ କରିଥିଲେ । ଏଣୁ ଉକ୍ତ ସ୍ଥାନରେ ତାଙ୍କ ସ୍ମୃତି ରକ୍ଷା କରାଯିବାର ସ୍ଥିର ହୋଇଛି । ଏହାଛଡ଼ା ଓ୍ୱାର୍ଦ୍ଧା ନିକଟରେ ଥିବା ସେବାଗ୍ରାମ-ଆଶ୍ରମରେ ସେ ୧୯୩୬ ମସିହାଠାରୁ ରହି ଦେଶ ପାଇଁ ବହୁ କାର୍ଯ୍ୟ ଆରମ୍ଭ କରିଥିଲେ । ପୁନଶ୍ଚ ଦକ୍ଷିଣ ଭାରତର ମଦୁରା ସହରରେ ହରିଜନ ଆନ୍ଦୋଳନ କରି ସେ ପ୍ରଥମେ କୃତକାର୍ଯ୍ୟ ହୋଇଥିବାରୁ କମିଟି ଉକ୍ତ ସ୍ଥାନଟିକୁ ସ୍ମୃତିରକ୍ଷାର ଯଥାର୍ଥ ସ୍ଥଳୀ ବୋଲି ବିବେଚନା କରିଛନ୍ତି । ପରିଶେଷରେ ତାଙ୍କ ମରଶରୀରକୁ ଯେଉଁଠାରେ ବିସର୍ଜନ କରାଯାଇଥିଲା, ସେହି ରାଜଘାଟର ସମାଧି ନିକଟରେ ଏକ କେନ୍ଦ୍ର ନାନା ଉପାଦାନସମ୍ବଳିତ ହୋଇ ଜାତିର ଆଦର୍ଶ ରୂପେ ପ୍ରତିଷ୍ଠିତ ହେବ ।

ଉକ୍ତ କମିଟି ମ୍ୟୁଜିୟମ୍‌ଗୁଡ଼ିକର କାର୍ଯ୍ୟକଳାପ କଣ ହେବ ତାହା ସ୍ପଷ୍ଟ ରୂପେ ସ୍ଥିର କରିଛନ୍ତି । ପ୍ରତ୍ୟେକ ମ୍ୟୁଜିୟମ୍‌ରେ ଗାନ୍ଧିଜୀଙ୍କ ସ୍ୱହସ୍ତ ଲିଖିତ ଚିଠିପତ୍ର ସଂଗୃହୀତ ହେବା ଛଡ଼ା ତାଙ୍କ ସମ୍ବନ୍ଧରେ ଲିଖିତ ହୋଇଥିବା ବିଭିନ୍ନ ଲେଖକଙ୍କର ବହି ମଧ୍ୟ ତହିଁରେ ଥିବା ଏକ ପାଠାଗାର ମଧ୍ୟରେ ସୁସଜ୍ଜିତ ହୋଇ ରହିବ । ତାଙ୍କ ଜୀବନର ଦର୍ଶନ, ନୀତି ଓ କାର୍ଯ୍ୟକଳାପ ସମ୍ବନ୍ଧରେ ବିଭିନ୍ନ ଚିନ୍ତାଶୀଳ ବ୍ୟକ୍ତିମାନେ କି ଭଳି ଆଲୋଚନା କରିଛନ୍ତି ତାହା ସର୍ବସାଧାରଣ ପଢ଼ିବା ପାଇଁ ବ୍ୟବସ୍ଥା କରାଯିବ । ମୋଟରେ କହିବାକୁ ଗଲେ ଗାନ୍ଧିଜୀଙ୍କ ସମ୍ବନ୍ଧରେ ଯାହା କିଛି ମିଳିଛି ଓ ମିଳୁଛି ସେ ଗୁଡ଼ିକ ଖୁବ୍ ଯତ୍ନରେ ସାଇତି ରଖିବାର ଦାୟିତ୍ୱ ଉକ୍ତ ମ୍ୟୁଜିୟମ ଗୁଡ଼ିକର ପ୍ରଧାନ ଲକ୍ଷ୍ୟ ହେବ । ଏବେ ତାଙ୍କର ସେହି ପୁରୁଣା ଘଣ୍ଟା, ଘୋଡ଼ି ହେଉଥିବା ଶାଲ୍, ଦାଣ୍ଡି ଯାତ୍ରାରେ ଯିବା ବେଳର ବାଡ଼ି, ତିନୋଟି ଗୁଳି ମଧ୍ୟରୁ ଯେଉଁ ଗୁଳିରେ ତାଙ୍କର ମୃତ୍ୟୁ ହେଲା ସେହି ଗୁଳି, ଦକ୍ଷିଣ ଆଫ୍ରିକାରେ ଓକିଲାତି କରୁଥିବା ବେଳର ଏଗାର ଖଣ୍ଡି ଆଇନ୍ ବହି, ୧୯୧୨ ମସିହାଠାରୁ ୧୯୧୫ ମସିହା ପର୍ଯ୍ୟନ୍ତ ତାଙ୍କ ସ୍ୱହସ୍ତ ଲିଖିତ ଡାଏରୀ ବ୍ୟତୀତ ଆହୁରି ଦୁଇଟି ପଦକ ମଧ୍ୟ ରଖା ଯାଇଛି । ଗୋଟିକରେ ଲେଖାଅଛି—"Sarjeant Major M. K. Gandhi, Indian Stretcher Career Corps" ଓ ଅନ୍ୟଟିରେ ଲେଖାଅଛି—"M. K. Gandhi, Natal, Volunteer, Indian Ambulance Corps."

ବର୍ତ୍ତମାନ ସାବରମତିଠାରେ ଗାନ୍ଧିଜୀଙ୍କ ସ୍ମୃତି-ରକ୍ଷା ମନ୍ଦିରର କାର୍ଯ୍ୟ ଖୁବ୍ ଚଞ୍ଚଳ ଆଗେଇ ଗଲାଣି । ଆହମଦାବାଦ୍‌ର ମିଲମାଲିକମାନେ "ସାବରମତୀ ଆଶ୍ରମ ସଂରକ୍ଷଣ ସମିତି" ହସ୍ତରେ ପ୍ରାୟ ୨୪ ଲକ୍ଷରୁ ଅଧିକ ଟଙ୍କା ଦାନ କରିଛନ୍ତି । ଉକ୍ତ ସମିତି ଗାନ୍ଧିଜୀ ରହୁଥିବା କୁଟୀର ଓ ସ୍ଥାନକୁ ସ୍ୱ ଅଧିକାରକୁ ଆଣିଲେଣି । ଓ୍ୟାର୍ଦ୍ଧାରେ ମଧ୍ୟ ଏହି କାର୍ଯ୍ୟ ଖୁବ୍ ଦ୍ରୁତଗତିରେ ଆଗେଇ ଗଲାଣି ।

ଏହାଛଡ଼ା ସମିତି ସ୍ଥିର କରିଛନ୍ତି ଯେ, ଯଦି କେହି ବ୍ୟକ୍ତିବିଶେଷ ବା ଅନୁଷ୍ଠାନ ପକ୍ଷରୁ ଗାନ୍ଧିଜୀଙ୍କ ସ୍ମୃତିରକ୍ଷା ନିମନ୍ତେ ଅନୁଷ୍ଠାନ ଗଠିତ ହେଉଥାଏ, ତେବେ ସମିତି ତାହାକୁ ନିରୁତ୍ସାହ କରିବେ ନାହିଁ, ବରଂ ଯଥାସମ୍ଭବ ସାହାଯ୍ୟ ଦେବାକୁ ଆପ୍ରାଣ ଚେଷ୍ଟା କରିବେ ।

ସମିତି ଯୋଜନା କରିଛନ୍ତି ଯେ, ଭାରତର ବିଭିନ୍ନ ସ୍ଥାନରେ ୧୪ ଟି ସ୍ମୃତି ସ୍ତମ୍ଭ ଏବଂ ୨୫ ଟି ଉପଦେଶ ଫଳକ ସ୍ଥାପିତ ହେବ । ଏବେ ବମ୍ବେ ସରକାର ଗାନ୍ଧିଜୀଙ୍କ ଦ୍ୱାରା ସ୍ଥାପିତ ହୋଇଥିବା ୧୯୧୫ର ମସିହାର ସତ୍ୟାଗ୍ରହ ଆଶ୍ରମଟିକୁ ସ୍ୱ ଅଧୀନକୁ ଆଣିଛନ୍ତି । ଉକ୍ତ ଆଶ୍ରମଟି ଆହମଦାବାଦ୍‌ର କୋଚ୍ରବଠାରେ ଅଛି । ଏହାଛଡ଼ା ସମିତି ସରକାରଙ୍କ ସାହାଯ୍ୟରେ ଆଗା ଖାଁ ପ୍ରାସାଦକୁ ସ୍ୱ ଅଧୀନକୁ ଆଣିଲେଣି । କାରଣ ଗାନ୍ଧିଜୀଙ୍କ ସ୍ତ୍ରୀ କସ୍ତୁରିବାଈ ଓ ତାଙ୍କ ସେକ୍ରେଟାରୀ ମହାଦେବ ଦେଶାଇଙ୍କର ସମାଧି ଏଠାରେ ଅଛି ।

ବହୁ ଚେଷ୍ଟା ପରେ ବର୍ତ୍ତମାନ ହଜାର ହଜାର ଚିଠିପତ୍ର ସାରା ପୃଥିବୀରୁ ସଂଗୃହୀତ ହୋଇଅଛି ଏବଂ ଅବଧି ସମିତି ଜନସାଧାରଣଙ୍କ ନିକଟରେ ଗାନ୍ଧିଜୀଙ୍କ ସମ୍ବନ୍ଧୀୟ ଚିଠିପତ୍ର ଯୋଗାଇ ଦେବାକୁ ଅନୁରୋଧ କରି ଆସୁଅଛନ୍ତି । ନୂଆଦିଲ୍ଲୀର ସାହାଜାହାନ ରାସ୍ତା ନିକଟରେ ଥିବା କୁଠିଘର ମଧ୍ୟରେ ଗାନ୍ଧିଜୀଙ୍କର ବହୁ ଚିଠିପତ୍ର ସଜ୍ଜିତ ହୋଇ ସାଧାରଣଙ୍କ ଅବଗତି ନିମନ୍ତେ ରଖାଯାଇ ଅଛି । ଏହା ଦେଖିବା ପାଇଁ ପ୍ରତ୍ୟହ ବହୁ ଲୋକ ଆସୁଛନ୍ତି ।

ସମିତି ଗାନ୍ଧିଜୀଙ୍କ ସମ୍ବନ୍ଧରେ ଲେଖା ଯାଇଥିବା ୫,୦୦୦ ବହି ସଂଗ୍ରହ କଲେଣି । ସେଥି ମଧ୍ୟରୁ ଏଗାରଟି ଭାଷାରେ ୨,୩୮୮ ଖଣ୍ଡ ବହି ଲେଖା ଯାଇଛି । ଏହା ଛଡ଼ା ଇଂରେଜୀ, ଡଚ, ଚୀନ, ଫରାସୀ, ଇଣ୍ଡୋନେସିଆ ଇଟାଲୀୟ, ରୁଷିୟ, ପର୍ତ୍ତୁଗୀଜ, ଥାଇ ପ୍ରଭୃତି ବିଦେଶୀ ଭାଷାରେ ୨,୪୪୭ ଖଣ୍ଡି ବହି ଲେଖା ଯାଇଛି । ୧୫,୦୦୦ ଫଟୋ ମଧ୍ୟ ତାଙ୍କ ଜୀବନର ବିଭିନ୍ନ ଅବସ୍ଥାରୁ ସଂଗୃହୀତ ହୋଇଅଛି । ଏହା ଛଡ଼ା ଅଢ଼େଇ ଲକ୍ଷ ଟଙ୍କାରେ ଚିଠିପତ୍ରଗୁଡ଼ିକର ଫଟୋ ମଧ୍ୟ ପ୍ରସ୍ତୁତ ହୋଇଛି । କେତେକ ଫିଲମ୍ ପାଞ୍ଚଲକ୍ଷ ଟଙ୍କାରେ ପ୍ରସ୍ତୁତ ହୋଇ ପାରିବ ବୋଲି ସମିତି ଅଟକଳ କରିଛନ୍ତି । ଇତି ମଧ୍ୟରେ କେତେଗୁଡ଼ିଏ ଫିଲମ୍ ପ୍ରସ୍ତୁତ ହୋଇ ଗଲାଣି । ତନ୍ମଧ୍ୟରୁ 'ନୂଆଖାଲି' 'Voice of India' ଅନ୍ୟତମ ।

ଗାନ୍ଧି ସାହିତ୍ୟ ଓ ଦର୍ଶନର ସମ୍ୟକ୍ ଆଲୋଚନା ପାଇଁ ବିଭିନ୍ନ ପତ୍ର ପତ୍ରିକା ପ୍ରକାଶିତ ହେବା ଛଡ଼ା ଯୋଗ୍ୟ ଲୋକଙ୍କୁ ନିଯୁକ୍ତ କରି ଗାନ୍ଧୀବାଦ ଜନସାଧାରଣଙ୍କ ନିକଟରେ ପ୍ରଚାର କରିବା ପାଇଁ ସମିତି ସ୍ଥିର କରିଛନ୍ତି । ପୃଥିବୀର ବିଭିନ୍ନ କୃତୀ ସନ୍ତାନ ତାଙ୍କ ଦର୍ଶନକୁ ଅଧ୍ୟୟନ କରିବା ପାଇଁ ଯେପରି ଉପଯୁକ୍ତ ସୁବିଧା ଓ ସୁଯୋଗ ପାଆନ୍ତି, ତାହା ସମିତି ବରାବର ଲକ୍ଷ୍ୟ ଦେବେ ।

ଏବେ ଆହମଦାବାଦ୍‌ଠାରେ ଗାନ୍ଧିଜୀଙ୍କ ସ୍ମୃତି ରକ୍ଷା ଉଦ୍ଦେଶ୍ୟରେ ଏକ ବୃହତ୍ 'ଗାନ୍ଧି ପାଠାଗାର' ପ୍ରତିଷ୍ଠିତ ହୋଇଛି । ଏହାଦ୍ୱାରା ଜନସାଧାରଣ ଗାନ୍ଧୀବାଦ ସମ୍ବନ୍ଧରେ କିଛି ପଢ଼ିବାକୁ ସୁବିଧା ପାଇବେ, ଏଥିରେ କୌଣସି ସନ୍ଦେହ ନାହିଁ ।



# ରେଡିଓ ବାଟେରୀ

ଶ୍ରୀ ବିଭୂତିଭୂଷଣ ମହାନ୍ତି, ଏମ୍. ଏସ୍-ସି; ଗ୍ରାଡ୍. ବ୍ରିଟ୍. ଆଇ. ଆର୍. ଇ.

'ରେଡିଓ ସଭ୍ୟତା'ର ପ୍ରଥମ କେତେବର୍ଷର ଗବେଷଣାର ଇତିହାସ କୁହେ କ୍ରିଷ୍ଟାଲ୍ ସେଟ୍ ରେଡିଓ । ଏହି ଧରଣର ରେଡିଓ ରିସିଭର ଆଜି ସୁଦ୍ଧା ବଜାରରେ ମିଳେ । ଏହା ସାହାଯ୍ୟରେ ନିକଟବର୍ତ୍ତୀ ରେଡିଓ ଷ୍ଟେସନରୁ ପ୍ରୋଗ୍ରାମ ଶୁଣି ହୁଏ ଏବଂ ଏହା କାର୍ଯ୍ୟ କରିବାକୁ କୌଣସି ବୈଦ୍ୟୁତିକ ଶକ୍ତି ଆବଶ୍ୟକ କରେ ନାହିଁ । କିନ୍ତୁ ଆଧୁନିକ ରେଡିଓ ରିସିଭର ସବୁ ତାଙ୍କର କାର୍ଯ୍ୟ ସମ୍ପନ୍ନ କରିବା ଲାଗି ବୈଦ୍ୟୁତିକ ଶକ୍ତି ଦରକାର କରନ୍ତି । ଏହି ବୈଦ୍ୟୁତିକ ଶକ୍ତି ରେଡିଓ ରିସିଭରର ଆମ୍ପ୍ଲିଫାୟାର, ଡିଟେକ୍ଟର୍ ଓ ଅସ୍‌ସିଲେଟର୍ ପ୍ରଭୃତିକୁ କାର୍ଯ୍ୟକାରୀ କରିଥାଏ, କେବଳ ଆକାଶରୁ ବେତାର ତରଙ୍ଗ ଏରିୟାଲ୍ ମଧ୍ୟ ଦେଇ ରେଡିଓ ରିସିଭର ମଧ୍ୟରେ ପ୍ରବେଶ କଲେ ଆମ୍ପ୍ଲିଫାୟାର୍ ପ୍ରଭୃତି ଯନ୍ତ୍ର ସେମାନଙ୍କର ନିଜ ନିଜର କାର୍ଯ୍ୟ କରନ୍ତି । ରେଡିଓ ରିସିଭର, ଏ.ସି., ଡି.ସି., ଓ ବାଟେରୀ ସାହାଯ୍ୟରେ ବୈଦ୍ୟୁତିକ ଶକ୍ତି ପାଇ କାର୍ଯ୍ୟ କରେ । ବାଟେରୀ ସମ୍ବନ୍ଧରେ କିଛି ଆଲୋଚନା କରିବା ଏହି ପ୍ରବନ୍ଧର ଉଦ୍ଦେଶ୍ୟ ।

ରେଡିଓରେ ଦୁଇ ପ୍ରକାର ବାଟେରୀ ବ୍ୟବହୃତ ହୁଏ; ଯଥା—ଡ୍ରାଏ ବାଟେରୀ ଓ ଓଏଟ୍ ବାଟେରୀ । ଏହି ଦୁଇଟି ବାଟେରୀ ବିଭିନ୍ନ ପ୍ରଣାଳୀରେ ପ୍ରସ୍ତୁତ ହୁଏ । ରେଡିଓରେ ଯେଉଁ ଡ୍ରାଏ ବାଟେରୀ ବ୍ୟବହାର କରାଯାଏ ତାହା ଦେଖିବାକୁ ଗୋଟିଏ ରଙ୍ଗୀନ ବାକ୍‌ସ ଭଳି । ଏହାକୁ ଖୋଲିଲେ ଏହା ମଧ୍ୟରୁ ଅନେକଗୁଡ଼ିଏ ଟର୍ଚ୍ଚ ଲାଇଟ୍‌ରେ ବ୍ୟବହୃତ ହେଉଥିବା ଛୋଟ ଛୋଟ ବାଟେରୀ ମିଳିବ । ଟର୍ଚ୍ଚ ଲାଇଟ୍‌ରେ ଯେଉଁ ଛୋଟ ବାଟେରୀ ବ୍ୟବହାର କରାଯାଏ ତାହାକୁ 'ସେଲ୍' କହନ୍ତି । ଏହିପରି କେତେଗୁଡ଼ିଏ ସେଲ୍‌ର ସମଷ୍ଟିରେ ଗୋଟିଏ ବଡ଼ ବାଟେରୀ ତିଆରି ହୁଏ ।

'ସେଲ୍' ମଧ୍ୟ ଦୁଇ ଶ୍ରେଣୀଭୁକ୍ତ । ଗୋଟିଏ ହେଉଛି ପ୍ରାଇମେରି ସେଲ ଓ ଅନ୍ୟଟି ସେକେଣ୍ଡାରି ସେଲ । ରେଡିଓରେ ଯେଉଁ ଓଏଟ୍ ବାଟେରୀ ବ୍ୟବହୃତ ହୁଏ ତାହା ସେକେଣ୍ଡାରି ସେଲ୍ ଶ୍ରେଣୀର ଅନ୍ତର୍ଗତ । ପ୍ରାଇମେରି ସେଲ୍‌ର ପ୍ରଥମ ଅବସ୍ଥା ପ୍ରତି ଦୃଷ୍ଟି ଦେଲେ ବିସ୍ମିତ ହେବାକୁ ହୁଏ । ଗୋଟିଏ କାଚ ପାତ୍ରରେ କିଛି ପାଣି ଓ ସଲ୍‌ଫିଉରିକ୍ ଏସିଡ୍ ରଖି ଗୋଟିଏ ତମ୍ବା ପାତିଆ ଓ ଗୋଟିଏ ଦସ୍ତା ପାତିଆ ଏସିଡ୍ ଓ ପାଣିର ଦ୍ରବଣରେ ବୁଡ଼ାଇ ଦିଆଯାଏ । ଏହି ପାତିଆ ଦୁଇଟିକୁ ଇଲେକ୍‌ଟ୍ରୋଡ୍ କୁହାଯାଏ । ତମ୍ବା ଇଲେକ୍‌ଟ୍ରୋଡ଼ରୁ ଦସ୍ତା ଇଲେକ୍‌ଟ୍ରୋଡ୍‌କୁ ଗୋଟିଏ ତାର ସଂଯୋଗ କରି ଦେଲେ ଦ୍ରବଣ ମଧ୍ୟରେ ଗୋଟିଏ ରସାୟନ ପ୍ରକ୍ରିୟା ଆରମ୍ଭ ହୁଏ ଏବଂ ତମ୍ବାରୁ ଦସ୍ତାକୁ ଗୋଟିଏ କ୍ଷୀଣ ବୈଦ୍ୟୁତିକ ସ୍ରୋତ ପ୍ରବାହିତ ହୁଏ । ଏଥିରୁ ସ୍ପଷ୍ଟ ବୁଝାଯାଏ ଯେ ରସାୟନିକ ଶକ୍ତି, ବୈଦ୍ୟୁତିକ ଶକ୍ତିକୁ ଉତ୍ପନ୍ନ କରେ । ଏହି 'ସେଲ୍'କୁ 'ଭୋଲ୍‌ଟେକ୍ ସେଲ୍' କୁହାଯାଏ ଏବଂ ଏହା ବାଟେରୀର ପ୍ରଥମାବସ୍ଥା । ଏହି କ୍ଷେତ୍ରରେ ତମ୍ବା ଇଲେକ୍‌ଟ୍ରୋଡ୍‌ରୁ ଦସ୍ତା ଇଲେକ୍‌ଟ୍ରୋଡକୁ ବୈଦ୍ୟୁତିକ ସ୍ରୋତ ପ୍ରବାହିତ ହୁଏ ବୋଲି, ତମ୍ବା ହେଉଛି 'ପଜିଟିଭ ଇଲେକ୍‌ଟ୍ରୋଡ୍' ଓ ଦସ୍ତା ହେଉଛି 'ନେଗେଟିଭ୍ ଇଲେକ୍‌ଟ୍ରୋଡ୍' । ଏହି ସେଲରୁ ଯେଉଁ ବୈଦ୍ୟୁତିକ ଶକ୍ତି ଉତ୍ପନ୍ନ ହୁଏ ତାହା ଅତ୍ୟନ୍ତ କ୍ଷୀଣ ଏବଂ ଗୋଟିଏ ଛୋଟ ଟର୍ଚ୍ଚ ଲାଇଟ୍ ବଲ୍‌ବକୁ ଜଳାଇ ପାରିବ ନାହିଁ । ଏହା ପରେ ଅନ୍ୟାନ୍ୟ ରସାୟନିକ ଦ୍ରବଣ ଓ ଧାତୁ ସାହାଯ୍ୟରେ ଅନେକ ପ୍ରକାରର ସେଲ୍ ପ୍ରସ୍ତୁତ ହୋଇଛି । ଡାକ୍ତରଖାନା-ଗାରି ଓ ଟେଲିଗ୍ରାଫ୍ ଅଫିସ୍‌ମାନଙ୍କରେ ଯେଉଁ 'ସେଲ୍' ବ୍ୟବହୃତ ହୁଏ ତାହାକୁ ଲେକ୍‌ଲାଙ୍କ୍ ସେଲ କୁହାଯାଏ । ବୈଜ୍ଞାନିକ ଲେକ୍‌ଲାଙ୍କ୍‌ଙ୍କ ନାମାନୁସାରେ ଏହାର ନାମକରଣ ହୋଇଛି । ଟର୍ଚ୍ଚଲାଇଟ୍‌ରେ ଯେଉଁ 'ସେଲ୍' ବ୍ୟବହାର କରାଯାଏ ତାହା ଏହି 'ଲେକ୍‌ଲାଙ୍କ୍ ସେଲ୍'

କିନ୍ତୁ ବ୍ୟବହାର କରିବାକୁ ସୁବିଧା ହୁଏ ବୋଲି ଏହାକୁ ଭିନ୍ନ ଧରଣରେ ପ୍ରସ୍ତୁତ କରାଯାଇଛି ।

ଟର୍ଚ୍ଚଲାଇଟ୍‌ର ଗୋଟିଏ 'ସେଲ୍‌'କୁ ଖୋଲିଲେ ଦେଖାଯିବ ଯେ ଦସ୍ତାର ଗୋଟିଏ ଛୋଟ କପ୍ ବା ଗିନା ମଧ୍ୟରେ କେତେଗୁଡ଼ିଏ ଧଳା ପଦାର୍ଥ ଅଛି ଏବଂ ଏହା ମଧ୍ୟରେ ଗୋଟିଏ ଛୋଟ କାର୍ବନ ରଡ଼୍ ଅଛି । ଏହି କାର୍ବନ ରଡ଼୍‌ର ଅଗ୍ରଭାଗରେ ପିତ୍ତଳର ଗୋଟିଏ ଗୁଣ୍ଡୁଣୀ ଥାଏ । ଏହି ପିତ୍ତଳର ଗୁଣ୍ଡୁଣୀଟି ସେଲ୍‌ର ଉପରେ ଥାଏ ଏବଂ ଏହାର ଚାରିପାଖ ଜଉ ଦ୍ୱାରା ବନ୍ଦ ହୋଇଥାଏ । ଯେଉଁମାନେ ଅନୁସନ୍ଧିତ୍ସୁ, ସେମାନେ ଗୋଟିଏ ପୁରୁଣା ଟର୍ଚ୍ଚଲାଇଟ ବ୍ୟାଟେରି ଭାଙ୍ଗି ଦେଖିଲେ ବେଶ୍ ବୁଝିପାରିବେ । ଯେଉଁ ଧଳା ପଦାର୍ଥ ଦସ୍ତା କପ୍ ମଧ୍ୟରେ ଥାଏ ତାହା ଆମୋନିୟମ କ୍ଲୋରାଇଡ଼୍ । ଏ କ୍ଷେତ୍ରରେ ମଧ୍ୟ ରାସାୟନିକ ପ୍ରକ୍ରିୟା ହୁଏ ଏବଂ ଏହା ଫଳରେ କାର୍ବନରୁ ଦସ୍ତାକୁ ବୈଦ୍ୟୁତିକ ସ୍ରୋତ ପ୍ରବାହିତ ହୁଏ । ତେଣୁ କାର୍ବନ ପଜିଟିଭ୍ ଓ ଦସ୍ତା ନେଗେଟିଭ୍ । ଟର୍ଚ୍ଚଲାଇଟ୍ ବାଟେରି ଉପରେ ଯେଉଁ ପିତ୍ତଳର ଗୋଟିଏ ଛୋଟ ଟୋପି ଥାଏ ତାହା ପଜିଟିଭ୍ ଏବଂ ତଳେ ଯେଉଁ ଦସ୍ତାର ଖୋଳ ଥାଏ ତାହା ନେଗେଟିଭ୍ । ଏହା ମଧ୍ୟ ପ୍ରାଇମେରି ସେଲ୍ । ଗୋଟିଏ ଛୋଟ ସେଲ୍ ୧.୫ ଭୋଲ୍‌ଟ ଓ ୧୧ ମିଲି-ଆମ୍ପିଅର୍ କରେଣ୍ଟ୍‌ର ବୈଦ୍ୟୁତିକ ଶକ୍ତି ଦିଏ ।

ସାଧାରଣ ରେଡ଼ିଓ ରିସିଭରରେ ଯେଉଁ ଡ୍ରାଏ ବାଟେରି ବ୍ୟବହୃତ ହୁଏ ସେଥିରୁ ୯୦ ଭୋଲ୍‌ଟ୍ ଓ ୧.୫ ଭୋଲ୍‌ଟ୍‌ର ଦୁଇଟି ବୈଦ୍ୟୁତିକ ସ୍ରୋତ ଆବଶ୍ୟକ ହୁଏ । ସେଥିପାଇଁ ଟର୍ଚ୍ଚ ଲାଇଟ୍‌ରେ ବ୍ୟବହୃତ ହେଉଥିବା ଛୋଟ ସେଲ୍‌ରୁ ଷାଠିଏଟି ଆଣି ଗୋଟିକର ପଜିଟିଭରୁ ଅନ୍ୟଟିର ନେଗେଟିଭ୍ ଏହିପରି ତାର ସଂଯୋଗ କରାଯାଏ । ଅର୍ଥାତ୍ ପ୍ରଥମ ବାଟେରିର ପଜିଟିଭ୍‌ର ତାର ଓ ଶେଷ ବାଟେରିର ନେଗେଟିଭର ତାର ବାହାରେ ଥାଏ ଓ ଏହା ୯୦ ଭୋଲ୍‌ଟର ବୈଦ୍ୟୁତିକ ସ୍ରୋତ ଦେଇପାରେ । ଏହାକୁ ସିରିଜ୍ କମ୍ବିନେସନ କୁହାଯାଏ । ଏହି ଷାଠିଏଟି ସେଲ୍‌କୁ ଗୋଟିଏ ଛୋଟ ପାକେଟ୍‌ଭଳି କରି କାଗଜରେ ବାନ୍ଧି ରଖାଯାଏ । ଆହୁରି ପ୍ରାୟ ତିରିଶଟି ସେଲ୍‌ର ସବୁ ପଜିଟିଭ୍‌ରେ ତାର ସଂଯୋଗ କରି ରଖାଯାଏ ଏବଂ ସବୁ ନେଗେଟିଭରେ ତାର ସଂଯୋଗ କରି ରଖାଯାଏ । ଏହି ଦୁଇଟି ତାରରୁ ୧.୫ ଭୋଲ୍‌ଟର ବୈଦ୍ୟୁତିକ ସ୍ରୋତ ମିଳିବ । ଏହାକୁ ପାରେଲାଲ୍ କମ୍ବିନେସନ୍ କୁହାଯାଏ । ଏହିସବୁ ସେଲ୍‌କୁ ମଧ୍ୟ ଗୋଟିଏ ଛୋଟ ପାକେଟ କରାଯାଏ । ବର୍ତ୍ତମାନ ଆଗରୁ ପ୍ରସ୍ତୁତ ହୋଇଥିବା ଷାଠିଏଟି ସେଲ୍‌ର ପାକେଟ୍ ଓ ତିରିଶଟି ସେଲ୍‌ରେ ତିଆରି ହୋଇଥିବା ପାକେଟ୍‌କୁ ଏକାଠି କରି ଗୋଟିଏ ବଡ଼ ପାକେଟ୍ କରାଯାଏ ଏବଂ ଏହା ଉପରେ ସୁନ୍ଦର ରଙ୍ଗୀନ କାଗଜ ଦେଇ ବାଟେରି ତିଆରି କରିଥିବା କମ୍ପାନୀର ନାମ ଓ ଅନ୍ୟାନ୍ୟ ଆବଶ୍ୟକୀୟ ବିଷୟମାନ ଲେଖାଯାଏ । ଷାଠିଏଟି ସେଲ୍‌ରୁ ଆସିଥିବା ଦୁଇଟି ତାର ଓ ତିରିଶଟି ସେଲ୍‌ରୁ ଆସିଥିବା ଦୁଇଟି ତାରକୁ ଆଣି ଗୋଟିଏ ସକେଟ୍‌ରେ ସଂଯୋଗ କରି ବାଟେରି ଉପରେ ଦିଆଯାଇଥାଏ । ରେଡ଼ିଓରେ ଯେଉଁ ଡ୍ରାଏ ବାଟେରି ବ୍ୟବହୃତ ହୁଏ ତା ଉପରେ ଟ୍ରାପିଜିୟମ୍ ଆକାରରେ ଚାରିଗୋଟି ଛିଦ୍ର ଥାଏ ଏବଂ ଏହି ଚାରିଗୋଟି ଛିଦ୍ର ସଙ୍ଗେ ଉପରଲିଖିତ ଚାରିଗୋଟି ତାର ସଂଯୋଗ କରାହୋଇଥାଏ । ରେଡ଼ିଓରୁ ଯେଉଁ ଲାଇନ୍ ଆସିଥାଏ ସେଥିରେ ମଧ୍ୟ ଚାରିଗୋଟି ପିନ୍ ଥାଏ । ଏହି ଚାରୋଟି ପିନ୍ ସକେଟ୍‌ରେ ଥିବା ଚାରୋଟି ଛିଦ୍ରରେ ଠିକ୍ ଲାଗିପାରେ ଏବଂ ଫଳରେ ରେଡ଼ିଓ ରିସିଭରକୁ ବୈଦ୍ୟୁତିକ ସ୍ରୋତମାନଙ୍କର ପ୍ରବାହ ହୁଏ । ରେଡ଼ିଓ ରିସିଭର୍‌ରେ ଯେଉଁ ଆମ୍ପ୍ଲିଫାୟାର୍, ଡିଟେକ୍‌ଟର ଓ ଅସିଲେଟର ପ୍ରଭୃତି ଥାନ୍ତି ସେମାନେ ୯୦ ଭୋଲ୍‌ଟ୍‌ର ବୈଦ୍ୟୁତିକ ସ୍ରୋତ ଆବଶ୍ୟକ କରନ୍ତି ଏବଂ ଏଥିରେ ଯେଉଁସବୁ ଭଲ୍‌ଭ୍ ବ୍ୟବହାର କରାଯାଇଥାଏ, ତାହାର କାଥୋଡ଼୍ ବା ଫିଲାମେଣ୍ଟ୍‌କୁ ଉତ୍ତାପ ଦେବାପାଇଁ ୧.୫ ଭୋଲ୍‌ଟ୍‌ର ବୈଦ୍ୟୁତିକ ସ୍ରୋତର ଆବଶ୍ୟକ ହୁଏ । ଏହି କାରଣରୁ ରେଡ଼ିଓ ବାଟେରିରେ ଦୁଇଟି

( ୧୩ ପୃଷ୍ଠା ଦେଖନ୍ତୁ )

# ବନଶୀ ଖଡ଼ା

ଅଧ୍ୟାପକ ଡକ୍ଟର ଶ୍ରୀ ବସନ୍ତ କୁମାର ବେହୁରା

ବନଶୀ ଖଡ଼ାରେ ମାଛ ମାରିବା ଏକ ଅର୍ଥକରୀ ଅବସର ବିନୋଦନ । ବନଶୀ ଖଡ଼ା ସାଧାରଣତଃ ବାଉଁଶରେ ତିଆରି ହୋଇଥାଏ । ଏଥିଲାଗି ବାଉଁଶ ଆସେ ବର୍ମାରୁ, ଖଡ଼ା ତିଆରି ହୁଏ ବଙ୍ଗଳାର ବିଭିନ୍ନ ସ୍ଥାନରେ, ଆଉ ବିକ୍ରୀ ପାଇଁ ବିଭିନ୍ନ ସ୍ଥାନକୁ ପଠାହୁଏ କଲିକତାରୁ । ଗୋଟିଏ ହିସାବରୁ ଜଣାପଡ଼େ ୧୯୨୪ ସାଲରେ ନରୱେର ରାଜଧାନୀ ଅସ୍‌ଲୋକୁ ଦଶ ହଜାର, ଅଷ୍ଟ୍ରେଲିଆକୁ ପନ୍ଦର ହଜାର, ବ୍ରିଟେନ୍‌କୁ ଦଶ ହଜାର ଓ ଯୁକ୍ତରାଷ୍ଟ୍ର ଆମେରିକାକୁ ପଚିଶ ହଜାର ବନଶୀ ଖଡ଼ା ଭାରତରୁ ରପ୍ତାନୀ କରାଯାଇଥିଲା । ଏ ସମସ୍ତର ମୂଲ୍ୟ ହେବ ପ୍ରାୟ ଦୁଇଲକ୍ଷ ଟଙ୍କା । ୧୯୩୫ ସାଲରୁ ୧୯୩୯ ସାଲ ଯାଏ ଭାରତରୁ ବାର୍ଷିକ ହାରାହାରି ତିନି ଶହ ପଚିଶ ହଜାର ବନଶୀ ଖଡ଼ା ବିଦେଶକୁ ପଠା ହୋଇଥିଲା । ଦ୍ୱିତୀୟ ମହାସମର ଲାଗିଯିବା ପରେ ଜାହାଜ ଅଭାବରୁ ବର୍ମାରୁ ଆଉ ବାଉଁଶ ଆସି ପାରି ନ ଥିଲା । ସେ ସମୟର ଚାହିଦା ମେଣ୍ଟାଇବା ପାଇଁ ମେଦିନୀପୁର ଓ ବର୍ତ୍ତମାନ ପାକିସ୍ଥାନ ଅନ୍ତର୍ଗତ କେତେକ ଅଞ୍ଚଳରୁ ବାଉଁଶ ସଂଗ୍ରହ କରି ସେଥିରେ ବନଶୀ ଖଡ଼ା ତିଆରି କରିବା ଲାଗି ଉଦ୍ୟମ ହୋଇଥିଲା; ମାତ୍ର ବନଶୀ ଖଡ଼ା ସେତେ ମଜବୁତ ହୋଇ ନଥିଲା ।

ଯୁକ୍ତରାଷ୍ଟ୍ର ଆମେରିକାରେ ଦୁଇକୋଟି ଷାଠିଏ ଲକ୍ଷ ଲୋକ ଅବସର ବିନୋଦନ ପାଇଁ ବନଶୀ ଖଡ଼ାରେ ମାଛ ମାରନ୍ତି । ଆମେରିକାର ବଜାରରେ ଭାରତୀୟ ବନଶୀ ଖଡ଼ାର ଚାହିଦା ଏଥିରୁ ଅନୁମାନ କରା ଯାଇ-ପାରେ । ଅବଶ୍ୟ ବନଶୀ ଖଡ଼ା ବ୍ୟବସାୟ ଭାରତର ଏକଚାଟିଆ ନୁହେଁ । ଏଥିରେ ଭାରତର ପ୍ରତିଦ୍ୱନ୍ଦୀ ହେଉଛନ୍ତି ଚୀନ ଏବଂ ଜାପାନ । ଚୀନଦେଶର 'ଟେନ୍‌କିନ୍' ବନଶୀ ଖାଡ଼ର ଖୁବ୍ ନାମ ଡାକ ଅଛି । ପଶ୍ଚିମ ବଙ୍ଗଳାରେ ପ୍ରାୟ ପାଞ୍ଚଲକ୍ଷ ଲୋକ ପାଞ୍ଚଲକ୍ଷ ଟଙ୍କା ଖଟାଇ ବନଶୀ ଖଡ଼ା ବ୍ୟବସାୟରେ ନିୟୋଜିତ ।

ବାର୍ଷିକ ଯେତେ ଖଡ଼ା ପ୍ରସ୍ତୁତ ହୁଏ, ସେଥିରୁ ଶତକଡ଼ା ୭୫ ଭାଗ ଯୁକ୍ତରାଷ୍ଟ୍ର ଆମେରିକା, ୧୫ ଭାଗ ବ୍ରିଟେନ୍ ଏବଂ ୧୦ ଭାଗ ଅଷ୍ଟ୍ରେଲିଆକୁ ରପ୍ତାନୀ କରାଯାଏ । ଏଥିପାଇଁ ବର୍ମାରୁ ନଦା, ଅଧା ଫମ୍ପା-ଅଧା ନଦା ଓ ଫମ୍ପା ବାଉଁଶ ଭାରତକୁ ଆମଦାନୀ କରାଯାଇଥାଏ । କଥାରେ ଅଛି, ନଈକେ ବାଙ୍କ, ଦେଶକେ ଫାଙ୍କ । ଆମେରିକାନ୍ ଓ ଅଷ୍ଟ୍ରେଲୀୟମାନେ ନଦା ଓ ଅଧା ଫମ୍ପା-ଅଧା ନଦା ଖାଡ଼ ପସନ୍ଦ କରନ୍ତି ଏବଂ ବିଲାତର ଲୋକେ ଫମ୍ପା ଖାଡ଼ ପସନ୍ଦ କରନ୍ତି । ଫମ୍ପା ଖାଡ଼ ଅପେକ୍ଷାକୃତ ନୀରସା । ନଦା ଓ ଅଧା ନଦା-ଅଧା ଫମ୍ପା ଖାଡ଼ ଶହେଟାର ମୂଲ୍ୟ ଅଶୀରୁ ଶହେ ଟଙ୍କା ଯାଏ ଦାମ ହେଲାବେଳେ, ଫମ୍ପା ଖାଡ଼ ଶହେଟାର ଦାମ ହୁଏ ପଇଁତିରିଶ ଟଙ୍କା । ପୁଣି ଆମେରିକା ଓ ବ୍ରିଟେନ୍‌ର ଲୋକେ ୧୫ ରୁ ୨୦ ଫୁଟ ପର୍ଯ୍ୟନ୍ତ ଲମ୍ବା ଖଡ଼ା ପସନ୍ଦ କରନ୍ତି ଓ ଅଷ୍ଟ୍ରେଲୀୟଗଣ ୧୦ ରୁ ୧୫ ଫୁଟ ଲମ୍ବର ଖଡ଼ା ଚାହାନ୍ତି । ଖଡ଼ାର ଅଗ ଆମେରିକାନ୍‌ମାନଙ୍କର ½ ଇଞ୍ଚ ହେବା ଦରକାର; ମାତ୍ର ଅଷ୍ଟ୍ରେଲୀୟମାନଙ୍କ ପାଇଁ ତା'ଠୁ ସରୁ ହେବା ଚାହି ।

ବାଉଁଶରୁ ବନଶୀ ଖଡ଼ା କିପରି ତିଆରି କରା-ହୁଏ ତା' ଏବେ କହେଁ । ପ୍ରଥମେ କଞ୍ଚା ବାଉଁଶ ସବୁକୁ ଖରାରେ ପନ୍ଦର ଦିନ କାଳ ଠିଆ କରି ଥୋଇ ଶୁଖାଯାଏ । ଫଳରେ ସେଥିରୁ ସମସ୍ତ ପାଣି ମରିଯାଏ । ତା'ପରେ ଧାରୁଆ ଛୁରୀରେ ବାଉଁଶକୁ ଚାଞ୍ଛି ସମାନ କରିବାକୁ ପଡ଼େ । ପରିଷ୍କାର କରିବାକୁ ବାଉଁଶ ଗୁଡ଼ିକୁ ରାତିକ ପାଇଁ ଏକ ଦ୍ରବଣରେ ବୁଡ଼ାଯାଏ । ଏଇ ଦ୍ରବଣରେ ବିଭିନ୍ନ ଦ୍ରବ୍ୟର ଅନୁପାତ ଏଇପରି; ୨½ ସେର ସୋଡ଼ା; ½ ସେର କଷ୍ଟିକ୍ ସୋଡ଼ା; ½ ସେର ସୋରିଷ ତେଲ ଓ ଅଳ୍ପ ପାଣି । କ୍ଷାର ମଇଳା ଛଡ଼ାଇ ଦିଏ, ତେଲ ବାଉଁଶକୁ ଉଜ୍ଜ୍ୱଳ-ବାଦାମୀ ରଙ୍ଗ ଦିଏ ଓ ରାତିକ ବୁଡ଼ିରହି ବାଉଁଶ କେତେକ ପରିମାଣରେ କୋମଳ ହୋଇଯାଏ ।

ଯାହାପର କାର୍ଯ୍ୟ ହେଲା, ବାଉଁଶ ଖଡ଼ା କପର ମଜବୁତ୍ ଓ ସିଧା ହେବ ଏବଂ ଗାଢ଼ ରଙ୍ଗ ଧରି ସୁନ୍ଦର ଦେଖାଯିବ । ଉତ୍ତାପ ପ୍ରୟୋଗ ଦ୍ୱାରା ଏ ସବୁ ସମ୍ଭବ ହୁଏ । ଏଥିପାଇଁ ଆବଶ୍ୟକ ବେଶୀ ଉତ୍ତାପ; ଆସ୍ତେ ଆସ୍ତେ ଜାଳ ଜଳିବ କିନ୍ତୁ ସମାନ ଭାବେ । ତେନ୍ତୁଳି ଗଛର କାଠ ଏ ଲାଗି ସର୍ବୋତ୍କୃଷ୍ଟ ବୋଲି ବିବେଚିତ ହୁଏ । ପ୍ରାୟ ଶହେ ଖଣ୍ଡ ଖଡ଼ାକୁ ଉପରୋକ୍ତ ମତେ ତିଆରି କରିବାକୁ ଆବଶ୍ୟକ ହୁଏ ତିନିମହଣ ତିରିଶ ସେର ( ବାଲେଶ୍ୱରୀ ) ତେନ୍ତୁଳି କାଠ । ଅଗ୍ନିରେ ଉତ୍ତାପ କାଳ ପ୍ରତି ଖଡ଼ା ପାଇଁ ପ୍ରାୟ ଦଶମିନଟ୍ । ଉତ୍ତାପ ଦିଆଗଲା ପରେ ଖଡ଼ାରେ ପେଶୀ ତେଲ ( Linseed oil ) ଘଷା ହୁଏ, ତା'ପରେ କିଛି କୀଟନାଶକ ପଦାର୍ଥ ଏବଂ ଶେଷରେ ଭାର୍ନିଶ ( Copal varnish ) ବୋଳା ହୁଏ । ପେଶୀ ତେଲ ଓ କୀଟନାଶକ ଘଷା ହେବା ଯୋଗୁ ଘୁଣ ପୋକ ଆଉ ବାଉଁଶକୁ କାଟି ପାରେ ନାହିଁ । ଭାର୍ନିଶ ଦିଆଯିବାରୁ ଖଡ଼ା ଚକ୍ ଚକ୍ କରି ସୁନ୍ଦର ଦିଶେ । ଯାହା ପରେ ଖଡ଼ା ବଡ଼ ହୋଇଥିଲେ ୧୫ ରୁ ୫୦ ଯାଏ ଏକ ସାଙ୍ଗରେ ଓ ସାନ ଖଡ଼ା ହୋଇଥିଲେ ଶହେ ଯାଏ ଏକ ସାଙ୍ଗରେ ଦୁଇଫୁଟ ଅନ୍ତରରେ ବନ୍ଧା ହୋଇ ଅଖା ଭିତରେ ପୂରାଯାଇ ରପ୍ତାନି କରାଯାଏ । ବର୍ତ୍ତମାନ କଲିକତାରୁ ବାର୍ଷିକ ପ୍ରାୟ ଦଶଲକ୍ଷ ଟଙ୍କାର ବନଶୀ ଖଡ଼ା ବିଦେଶକୁ ପଠାଯାଉଛି ।

ଏ ଗଲା କେବଳ ଖଡ଼ାର କଥା । ବନଶୀ ପକାଇବା ପାଇଁ ଏଇ ଖଡ଼ାରେ ମନୋମତ ହୁଇଲ୍, ମଜବୁତ୍ ସୂତା, ବନଶୀ କଣ୍ଟା, ସୀସା, ସୋଲ କାଠି ଇତ୍ୟାଦି ଲଗାଇବାକୁ ହୁଏ । କଟକ ବଜାରରେ ଉପରୋକ୍ତ ଜିନିଷ ଲାଗିଥିବା ସମ୍ପୂର୍ଣ୍ଣ ବନଶୀ ଖାଡ଼ି ଗୋଟିକର ଦାମ ଆଠ ନଅ ଟଙ୍କା ଭିତରେ ହେବ ।

---

# ବାରଖାଡ ହାଇମ୍ ଓ ଗ୍ରହାନ୍ତର ଯାତ୍ରା

ଶ୍ରୀ ବସନ୍ତକୁମାର ଦାସ, ବି. ଏସ୍.ସି

• ପ୍ରସିଦ୍ଧ ବୈଜ୍ଞାନିକ ଆଇନ୍‌ଷ୍ଟାଇନ୍‌ଙ୍କ ପଞ୍ଚ ବିସ୍ତୃତି (Five dimensions ଗଣିତ କଥା ଅନେକେ ଶୁଣିଥିବେ । ଆମେ ସ୍କୁଲ ଜ୍ୟାମିତିରେ ତ୍ରିଭୁଜ, ଚତୁର୍ଭୁଜ, ପଞ୍ଚଭୁଜ ଓ ବୃତ୍ତ ପ୍ରଭୃତି ଯେଉଁସବୁ କ୍ଷେତ୍ର ସମ୍ବନ୍ଧରେ ଆଲୋଚନା କରିଥାଉଁ ସେ ସମସ୍ତର କେବଳ ଦୁଇଟି ମାତ୍ର ବିସ୍ତୃତି ଅଛି— ଲମ୍ବ ଏବଂ ପ୍ରସ୍ଥ । ଇଟା, ପଥର ପ୍ରଭୃତିର ଅଙ୍କ କଷିବାକୁ ଯାଇ ଆମକୁ ତିନୋଟି ବିସ୍ତୃତି ନେବାକୁ ପଡ଼େ ଯଥା, ଲମ୍ବ, ପ୍ରସ୍ଥ ଓ ଉଚ୍ଚତା । ଚିନ୍ତା କରି ଦେଖନ୍ତୁ, ପୃଥିବୀର ଯେ କୌଣସି ପଦାର୍ଥର ଆକାର ଏହି ତିନୋଟି ବିସ୍ତୃତି ମଧ୍ୟରେ ସୀମିତ । ଏହି ତିନୋଟି ଛଡ଼ା ଆଉ ଏକ ଚତୁର୍ଥ ବିସ୍ତୃତିର କଳ୍ପନା ସୁଦ୍ଧା ଆମେ କରିପାରିବା ନାହିଁ । ଆଲବର୍ଟ ଆଇନ୍‌ଷ୍ଟାଇନ୍ କିନ୍ତୁ ତାଙ୍କର ଆପେକ୍ଷିକ ତତ୍ତ୍ୱରେ ୪ର୍ଥ ଏବଂ ୫ମ ବିସ୍ତୃତିର ଅଙ୍କ ସବୁ କଷିଛନ୍ତି । ପୃଥିବୀର ଖୁବ୍ କମ୍ ଗଣିତଜ୍ଞ ତାଙ୍କର ୫ମ ବିସ୍ତୃତିର ଅଙ୍କ ବୁଝିବାକୁ ସମର୍ଥ ହୋଇଛନ୍ତି ।

୧୯୫୨ ରେ ଷ୍ଟାଟ୍‌ଗାର୍ଟ ସହରରେ ବସିଥିବା ଆନ୍ତର୍ଜାତୀୟ ଜ୍ୟୋତିଷ୍କ-ବିଜ୍ଞାନ ସମ୍ମିଳନୀରେ ଜଣେ ଅନ୍ଧ ବୈଜ୍ଞାନିକଙ୍କର ଏକ ପ୍ରବନ୍ଧ ସମସ୍ତଙ୍କୁ ଚକିତ କରିଥିଲା । ଏହି ପ୍ରବନ୍ଧରେ Meso-field theory ନାମକ ଏକ ନୂତନ ତତ୍ତ୍ୱର ଅବତାରଣା କରା ଯାଇଥିଲା ଏବଂ ଏଥିରେ ଯେଉଁସବୁ ଗଣିତ କଷାଯାଇଥିଲା, ସେଥିରେ ୬ଷ୍ଠ ବିସ୍ତୃତିର ମଧ୍ୟ ବ୍ୟବହାର ହୋଇଥିଲା ।

ଏହି ଅନ୍ଧ ବୈଜ୍ଞାନିକ ଜଣେ ଜର୍ମାନ୍ ଏବଂ ତାଙ୍କର ନାମ ବାରଖାଡ଼ ହାଇମ୍ (Burkhard Heim) ।

ହାଇମ୍‌ଙ୍କର ଏହି ପ୍ରସିଦ୍ଧ ତତ୍ତ୍ୱ ଗ୍ରହାନ୍ତର ଯାତ୍ରା ଉପରେ ପର୍ଯ୍ୟବସିତ । ହାଇମ୍‌ଙ୍କର କଳ୍ପନା ଅନୁସାରେ ମଙ୍ଗଳ ଗ୍ରହକୁ ଯିବାକୁ ଏକ ସପ୍ତାହ ଏବଂ ଚନ୍ଦ୍ର ପର୍ଯ୍ୟନ୍ତ ଯିବାକୁ ସାଢ଼େ ତିନିଦିନ ଲାଗିବ ।

ଗ୍ରହାନ୍ତର ଯାତ୍ରାପାଇଁ ଅନ୍ୟ ବୈଜ୍ଞାନିକମାନେ ଯେଉଁ ଶୂନ୍ୟ-ପୋତର କଳ୍ପନା କରୁଛନ୍ତି ସେଥିରେ କାଲେଣି

ଏବଂ ଶକ୍ତି ସରବରାହ ପାଇଁ ଯେତେ ପେଟ୍ରୋଲ, ଏଥିଲିନ୍ କିମ୍ବା ପାରାଫିନ ଲାଗିବ, ସେ ସମସ୍ତର ଓଜନ ଏବଂ ବିଶାଳତା ଶୂନ୍ୟଯାନର ଘୋର ପ୍ରତିବନ୍ଧକ ହେବ । ରକେଟ୍ ଯାନ ସାହାଯ୍ୟରେ ପୃଥିବୀର ଆକର୍ଷଣ-ବଳୟ ଅତିକ୍ରମ କରିବାପାଇଁ ଯେଉଁ କଳ୍ପନା କରା ଯାଉଛି ତାହା ମଧ୍ୟ ସନ୍ଦେହ ଜନକ । ହାଇମ୍ ଯେଉଁ ଶୂନ୍ୟ ପୋତର କଳ୍ପନା କରୁଛନ୍ତି ତାହା ଅଣବିକ ଶକ୍ତିଦ୍ୱାରା ପରିଚାଳିତ ହେବ ଏବଂ ଏହି ଶୂନ୍ୟପୋତ ୧ ସେକେଣ୍ଡରେ ୬ ହଜାର ମାଇଲରୁ ଅଧିକ ବେଗରେ ଚାଲିବ । ଏହି ଶୂନ୍ୟପୋତର ଗତିପଥ ନିୟନ୍ତ୍ରଣ କରିବାକୁ ହାଇମଙ୍କୁ ୬ଷ୍ଟ-ବିସ୍ତୃତ ଅଙ୍କ କଷିବାକୁ ପଡ଼ୁଛି ।

ଇଉରେନିଅମ ଏବଂ ପ୍ଲୁଟୋନିଅମ ପରମାଣୁର ବିଦ୍ୟୁତ୍ ଚୁମ୍ବକ ଶକ୍ତି ବାହାର କରି ଏବଂ ତାକୁ ଯାନ୍ତ୍ରିକ ଶକ୍ତିରେ ପରିଣତ କରି ତାହା ସାହାଯ୍ୟରେ ହାଇମ୍‌ଙ୍କର ଶୂନ୍ୟ-ପୋତକୁ ଚଲାଇବାକୁ ପଡ଼ିବ ।

ଏହି ଶୂନ୍ୟପୋତର ଆକାର ଏପରି ଭାବରେ ସ୍ଥିର କରା ଯାଇଛି, ଯାହାଦ୍ୱାରା କି ବାହାରର ଘର୍ଷଣ ଶକ୍ତିର ପ୍ରଭାବ ଆରୋହୀମାନଙ୍କ ଉପରେ ଆଦୌ ପଡ଼ିବ ନାହିଁ ।

ହାଇମ୍‌ଙ୍କର ଶୂନ୍ୟ ପୋତ ଡମ୍ୱାକାର ହେବ । ଏକ ଡମ୍ବରୁ ଲମ୍ବା ଭାବରେ ଉପର ତଳ କରି ରଖିଲେ ଯେପରି ଦଶିବ, ଏହି ଶୂନ୍ୟ ପୋତ ଠିକ୍ ସେହିପରି ଦଶିବ । ଏହାର ତଳେ ଏବଂ ମଧ୍ୟ ଭାଗରେ ଦୁଇଟି ବୃତ୍ତାବରଣ ରହିବ । ଏହି ବୃତ୍ତାବରଣ ଦୁଇଟିକୁ ଚାରୋଟି ଦ୍ରାଘିମାବରଣ ସଂଯୁକ୍ତ କରିବ । ଏହି ଶୂନ୍ୟପୋତର ଉଚ୍ଚତା ହେବ ୭୦ ଫୁଟ ।

ବାରଖାଉ୍ ହାଇମ୍ ଏହି ଶୂନ୍ୟ ପୋତ ତିଆରି କରିବା ପାଇଁ ବର୍ତ୍ତମାନ ପରୀକ୍ଷାମୂଳକ ଗବେଷଣା ଚଳାଇଛନ୍ତି । କିନ୍ତୁ ତାଙ୍କର ନଷ୍ଟ ଚକ୍ଷୁ ଦୁଇଟି ତାଙ୍କର ଗବେଷଣାର ଘୋର ପ୍ରତିବନ୍ଧକ ହେଉଛି । ଅସ୍ତ୍ରୋପଚାର ଦ୍ୱାରା ତାଙ୍କର ଏକ ଆଖି ଭଲ ହେବାର ଆଶା ଅଛି ।

ବାରଖାଉ୍ ହାଇମ ଯେ କେବଳ ଦେଖି ପାରନ୍ତି ନାହିଁ ତା ନୁହେଁ । ସେ ଭଲ ଭାବରେ ଶୁଣି ମଧ୍ୟ ପାରନ୍ତି ନାହିଁ ଏବଂ ତାଙ୍କର ହାତ ଦୁଇଟି ମଧ୍ୟ ଖଣ୍ଡିଆ ।

ହାଇମ୍‌ଙ୍କ ବୟସ ବର୍ତ୍ତମାନ ମାତ୍ର ୨୯ ବର୍ଷ । ଗତ ପୃଥିବୀ ଯୁଦ୍ଧ ସମୟରେ ଜର୍ମାନି ପାଇଁ ତାଙ୍କୁ ଯୁଦ୍ଧକରିବାକୁ ପଡ଼ିଥିଲା । ଅନ୍ୟ ବୈଜ୍ଞାନିକମାନଙ୍କ ପରି ତାଙ୍କୁ ମଧ୍ୟ ନାତ୍ସି ସରକାରର କ୍ରୀଡ଼ା ସାମଗ୍ରୀ ହେବାକୁ ପଡ଼ିଥିଲା । ସୈନ୍ୟ ବିଭାଗର ଏକ ଗୁପ୍ତ ବୀକ୍ଷଣାଗାରରେ ତାଙ୍କୁ କାର୍ଯ୍ୟ କରିବାକୁ ପଡ଼ୁଥିଲା । ସେଠାରେ ନୂତନ ମାରଣାସ୍ତ୍ର ଉଦ୍ଭାବନ ନିମନ୍ତେ ଗବେଷଣା ଚାଲିଥିଲା । ସେତେବେଳେ ସେ ଅଞ୍ଚଳରେ ଭୀଷଣ ବୋମା ବର୍ଷଣ ଚାଲିଥାଏ । ତାଙ୍କର ଜଣେ ସହକର୍ମୀ ଦିନେ ଭୁଲବଶତଃ ଗୋଟିଏ ରସାୟନ ବୋତଲରେ ଏକ ଭୁଲ ଲେବୁଲ ମାରି ଦେଲେ । ହାଇମ୍ ସେଥିରୁ କିଛି ପାଉଡାର ବାହାର କଲାମାତ୍ରେ ଏକ ବିସ୍ଫୋରଣ ହେଲା । ଏହି ବିସ୍ଫୋରଣ ଫଳରେ ତାଙ୍କର ଆଜି ଏ ଅବସ୍ଥା ।

—୦—

## ରାଷ୍ଟ୍ରୀୟ ପଦବୀ ଓ ପଦକ

ଜାନୁଆରୀ ୧୫ ତାରିଖର 'ଗେଜେଟ୍ ଅଫ୍ ଇଣ୍ଡିଆ'ରେ ଭାରତ ସରକାରଙ୍କ ପ୍ରଦତ୍ତ 'ଭାରତ ରତ୍ନ' 'ପଦ୍ମ-ବିଭୂଷଣ', 'ପଦ୍ମ-ଭୂଷଣ' ଓ 'ପଦ୍ମ ଶ୍ରୀ' ପଦବୀ ଓ ପଦକର ବିବରଣ ବର୍ଣ୍ଣିତ ହୋଇଅଛି ।

**ଭାରତ ରତ୍ନ**—ଉଚ୍ଚକୋଟୀର ସାହିତ୍ୟ, କଳା, ବିଜ୍ଞାନ ବା ଜନମଙ୍ଗଳ କାର୍ଯ୍ୟ ପାଇଁ ଏହି ଉପାଧି ପ୍ରଦତ୍ତ ହେବ । ଭାରତରତ୍ନ ପଦକର ରୂପ ଏହିପରି ହେବ—ଅଶ୍ୱତ୍ଥ ପତ୍ରାକୃତି, $2\frac{5}{16}$ ଇଞ୍ଚ ଲମ୍ବ, $1\frac{7}{8}$ ଇଞ୍ଚ ଓସାର ( ଉପର ଅଂଶରେ ) ଓ $\frac{1}{8}$ ଇଞ୍ଚ ମୋଟା ଏହି ବ୍ରୋଞ୍ଜ ପଦକଟିର ଆଗ ପାଖରେ ସୂର୍ଯ୍ୟଙ୍କର ଛବି ଏବଂ ତା ତଳେ ହିନ୍ଦୀରେ 'ଭାରତ ରତ୍ନ' ଉଦ୍‌ଗତ ରହିବ । ଅପର ପାର୍ଶ୍ୱରେ ରାଷ୍ଟ୍ରୀୟ ସଙ୍କେତ ଏବଂ ହିନ୍ଦୀରେ ରାଷ୍ଟ୍ରର ଆଦର୍ଶମାତ (motto) ଲେଖା ରହିବ । ସୂର୍ଯ୍ୟ, ରାଷ୍ଟ୍ରୀୟ ସଙ୍କେତ ଓ ପଦକର ଧାର ପ୍ଲାଟିନମ୍‌ରେ ନିର୍ମିତ ହେବ । ଗୋଟିଏ ଧଳା ସିଲ୍‌କ ଫିତାସାହାଯ୍ୟରେ ଏହାକୁ ବେକରେ ପିନ୍ଧିବାକୁ ହେବ ।

**ପଦ୍ମବିଭୂଷଣ**—ପ୍ରାୟ ବୃତ୍ତାକାର, ବୃତ୍ତ ଉପରେ ଗୋଟିଏ ଡିଜାଇନ ଖୋଦିତ ରହିବ । ବୃତ୍ତାଂଶର ବ୍ୟାସ ହେବ $1\frac{3}{4}$ ଇଞ୍ଚ ଏବଂ ପଦକର ମୋଟ $\frac{1}{8}$ ଇଞ୍ଚ ହେବ । ଆଗ ପଟରେ ଗୋଟିଏ ବୃତ୍ତ କ୍ଷେତ୍ରରେ ପଦ୍ମ ଫୁଲଟିଏ ଉଦ୍‌ଗତ ରହି ଫୁଲର ଉପରେ ହିନ୍ଦୀ ଅକ୍ଷରରେ 'ପଦ୍ମ' ଏବଂ ନିମ୍ନରେ 'ବିଭୂଷଣ' ଚିହ୍ନିତ ରହିବ । ପଛପଟ 'ଭାରତରତ୍ନ' ପରି । ପଦକଟି ବ୍ରୋଞ୍ଜ

( ୧୫ ପୃଷ୍ଠା ଦେଖନ୍ତୁ )



# ବ୍ୟୋମ ଓ ବିମାନ

## ଉଡ଼ାଜାହାଜର ପରୀକ୍ଷା

ଆଜିକାଲି ବ୍ୟୋମପଥରେ ଦିନକୁ ଦିନ ଅଧିକ ଯାତ୍ରୀ ଯିବାଆସିବା କରିବାକୁ ଆରମ୍ଭ କଲେଣି । ଆନ୍ତର୍ଜାତିକ ବିମାନ ଚଳାଚଳ ସଂସ୍ଥା ଅଧୀନରେ ବର୍ତ୍ତମାନ ୭୧ଟି କମ୍ପାନୀ ରେଜିଷ୍ଟ୍ରିଭୁକ୍ତ । ୧୯୫୩ରେ ଏମାନେ ଯେତେ ଯାତ୍ରୀ ନିଆଆଣ କରିଥିଲେ, ଗତବର୍ଷ ଶତକଡ଼ା ୧୦ ଅଧିକ ହାରରେ ଯାତ୍ରୀ ବହନ କରିଛନ୍ତି । ଗୋଟିଏ ହିସାବରୁ ପ୍ରକାଶ ଯେ ୧୯୫୪ରେ ପୃଥିବୀର ବିଭିନ୍ନ ବ୍ୟୋମପଥରେ ସର୍ବମୋଟ ପ୍ରାୟ ୪ କୋଟି ୪୦ ଲକ୍ଷ ଯାତ୍ରୀ ଯାତାୟାତ କରିଛନ୍ତି । ଏହାଛଡ଼ା ପୂର୍ବବର୍ଷ ଅପେକ୍ଷା ଶତକଡ଼ା ୪ ଅଧିକ ମାଲ ଏବଂ ଶତକଡ଼ା ୧୪ ଅଧିକ ଡାକ ବହନ କରାହୋଇଅଛି । ୧୯୫୫ରେ ଏହା ଆହୁରି ଅଧିକ ବୃଦ୍ଧି ପାଇବ ବୋଲି ଅନୁମାନ କରାଯାଏ ।

ଉଡ଼ାଜାହାଜ ସର୍ଭିସ୍‌ର ଲୋକପ୍ରିୟତା ବଢ଼ିବା ସଙ୍ଗେ ସଙ୍ଗେ ବିମାନନିର୍ମାତା ଓ ବିମାନକମ୍ପାନୀଙ୍କର ଦାୟିତ୍ୱ ମଧ୍ୟ ବଢ଼ିଯାଇଛି । ଗୋଟିଏ ନୂଆ ବିମାନକୁ ଯାତ୍ରୀବହନ କାର୍ଯ୍ୟରେ ନିଯୁକ୍ତ କରିବା ପୂର୍ବରୁ ସେମାନେ ତାହାକୁ କିପରି ତନ୍ନତନ୍ନରୂପେ କଠୋର ପରୀକ୍ଷାର ସମ୍ମୁଖୀନ କରାନ୍ତି, ତାହା ଭାବିଲେ ଉପରୋକ୍ତ ଉକ୍ତିର ସତ୍ୟତା ଜଣାପଡ଼େ ।

ଗୋଟିଏ ନୂଆ ଉଡ଼ାଜାହାଜ ବାହାରୁ ଦେଖିବାକୁ ଅତି ସୁନ୍ଦର ଦେଖାଯାଏ । ରେଲଗାଡ଼ି ବା ଜାହାଜଠାରୁ ଏହାର ରୂପ ଅଧିକ ଲୋଭନୀୟ ବୋଲି କହିଲେ ଭୁଲ ହେବ ନାହିଁ । ଧାତୁନିର୍ମିତ ଯନ୍ତ୍ରଟିରେ ରଙ୍ଗପୁଟ ମଡ଼ାଇ ତାକୁ ଯେତେଦୂର ଚକଚକିଆ କରାଯାଇପାରେ ତାହା କରିବାକୁ ନିର୍ମାତାମାନେ ଭୁଲି ନ ଥାନ୍ତି । ମାତ୍ର ବୁଝିବାକୁ ହେବ ଯେ ଯନ୍ତ୍ରର ଏହି ବାହାର ଚାକଚକ୍ୟ ଭିତରେ ଅତି ଜଟିଳ କଳକବ୍ଜା ସନ୍ନିବେଶିତ ଏବଂ ସେଇଥିଯୋଗୁଁ ଗୋଟିଏ ବିମାନର ମୂଲ୍ୟ ଏତେ ବେଶୀ —ପ୍ରାୟ ୧ ସେର ଓଜନକୁ ଟ ୧୦୬୯ ବା ତହିଁରୁ ଅଧିକ ।

କାରଖାନାରୁ ତିଆରି ହୋଇ ବାହାରିଲାପରେ ବିମାନର ପ୍ରଥମ ପରୀକ୍ଷା ଆରମ୍ଭ ହୁଏ । ନିର୍ମାତାମାନେ ବିମାନଟିକୁ ନାନା ଅବସ୍ଥାରେ ଉଡ଼ାଇ ଯାହା ଯାହା ହେବା ଦରକାର, ତା ସବୁ ଠିକ୍ ଭାବରେ ହେଉଛି କି ନା ସାଧାରଣ ଭାବରେ ଆଗ ଦେଖି ନିଅନ୍ତି । ଏଥିରୁ ଉତ୍ତୀର୍ଣ୍ଣ ହେଲେ ସରକାରଙ୍କ ଦ୍ୱାରା ନିଯୁକ୍ତ ଏକ ସ୍ୱତନ୍ତ୍ର ବିଭାଗଦ୍ୱାରା ବିମାନର ଦ୍ୱିତୀୟ ପରୀକ୍ଷା ଆରମ୍ଭ ହୁଏ । ଧନଜୀବନର ନିରାପତ୍ତା ଦୃଷ୍ଟିରୁ ଯେଉଁ ଯେଉଁ ନିୟମଗୁଡ଼ିକ ଧାର୍ଯ୍ୟ କରାଯାଇଛି, ସେହିଗୁଡ଼ିକ ପ୍ରତ୍ୟେକ ବିମାନଠାରେ ପ୍ରୟୋଗ କରାଯାଏ । ଏଥିରେ ଉତ୍ତୀର୍ଣ୍ଣ ହୋଇସାରିଲାପରେ ସରକାରଙ୍କ ଟେଷ୍ଟ-ବିଭାଗ ବିମାନକୁ ଗୋଟିଏ ସାର୍ଟିଫିକେଟ ଦିଅନ୍ତି । ଏହି ସାର୍ଟିଫିକେଟ ପାଇଲେ ନିର୍ମାତାମାନେ ବିମାନକୁ କ୍ରେତାମାନଙ୍କ ହାତରେ ଅର୍ପଣ କରନ୍ତି ।

କୌଣସି ବିମାନ କମ୍ପାନୀ ବିମାନଟି କ୍ରୟ କରିବା ସଙ୍ଗେ ସଙ୍ଗେ ତାହାକୁ ଯାତ୍ରୀ ବହନ କାର୍ଯ୍ୟରେ ନିୟୋଜିତ କରନ୍ତି ନାହିଁ । ସେମାନେ ମଧ୍ୟ ତାହାକୁ କଠୋର ପରୀକ୍ଷାର ସମ୍ମୁଖୀନ କରାନ୍ତି । କେବଳ ଚିତ୍ତାକର୍ଷକ ଚେହେରା ଦେଖି କୌଣସି ବିମାନ ଏମାନଙ୍କୁ ମୁଗ୍ଧ କରିପାରେ ନାହିଁ । ଦୀର୍ଘ କାଳ ପର୍ଯ୍ୟନ୍ତ ନିରାପଦରେ ସହସ୍ର ସହସ୍ର ଯାତ୍ରୀଙ୍କୁ ନେଇ ଏହା ଆକାଶ ମାର୍ଗରେ ନିର୍ବିଘ୍ନରେ ଯେପରି ଯାତାୟାତ କରି ପାରିବ, ତାହା ଦେଖିବାର କଥା । ପୁଣି ସେତିକି ନୁହେଁ, ନିଜର ଯାତ୍ରା ଖର୍ଚ୍ଚ ଉଠାଇ କମ୍ପାନୀକୁ ଲାଭବାନ କରାଇବ । ତା ନ ହେଲେ ବ୍ୟବସାୟ ଦୃଷ୍ଟିରୁ ଏହା କାହାରିକୁ ପୋଷାଇବ ନାହିଁ ।

ପ୍ରସିଦ୍ଧ ବିମାନ କମ୍ପାନୀମାନେ ବଛା ବଛା ବୈମାନିକମାନଙ୍କ ଉପରେ ଏ ଦାୟିତ୍ୱ ନ୍ୟସ୍ତ କରନ୍ତି । ଅଭିଜ୍ଞ ବିମାନଚାଳକ, ଇଂଜିନିଅର ଓ ସୁଦକ୍ଷ

କାରିଗରମାନଙ୍କୁ ନେଇ ଗୋଟିଏ ଗୋଟିଏ 'Brains Trust' ବା ସ୍ୱତନ୍ତ୍ର ତଦନ୍ତ ବିଭାଗ ଏମାନଙ୍କର ଅଛି । ଏମାନେ ଗୋଟିଏ ନୂଆ ବିମାନକୁ କାର୍ଯ୍ୟରେ ଲଗାଇବା ପୂର୍ବରୁ ଅନ୍ତତଃ ୩୦୦ ଘଣ୍ଟା ପର୍ଯ୍ୟନ୍ତ ଏହାକୁ ବିଭିନ୍ନ କ୍ଷେତ୍ରରେ ଓ ପାଣି ପାଗରେ ଉଡ଼ାନ୍ତି । ଏହି ପରୀକ୍ଷାକୁ ସାଧାରଣତଃ ୩ ଭାଗରେ ବିଭକ୍ତ କରି ଯାଇଥାଏ । ପ୍ରଥମତଃ ପ୍ରାୟ ୧୦୦ ଘଣ୍ଟା କାଳ ଉଡ଼ାଇ ସ୍ଥାନୀୟ ପରୀକ୍ଷା କରାଯାଏ । ଏହି ପରୀକ୍ଷାର ଉଦ୍ଦେଶ୍ୟ ହେଉଛି ବିମାନର ଚାଳନା ଅର୍ଥାତ୍ ଉଠାଇବା, ଓହ୍ଲାଇବା ଓ ଇଂଜିନକୁ ନିୟନ୍ତ୍ରଣ କରିବା ପ୍ରଣାଳୀ ଆଦି ବିଷୟ ଅବଗତ ହେବା ଏବଂ ଏହାର ପ୍ରାରମ୍ଭିକ ରକ୍ଷଣାବେକ୍ଷଣ ଖର୍ଚ୍ଚ ଜାଣିବା । ଦ୍ୱିତୀୟରେ ଏହାକୁ ଦୂର ସ୍ଥାନକୁ ଏବଂ ବଡ଼ଆପାର ଘାଟିମାନଙ୍କୁ ଉଡ଼ାଇ ଆହୁରି ବ୍ୟାପକ ଭାବରେ ପରୀକ୍ଷା କରାଯାଏ । ତୃତୀୟ ଏବଂ ଶେଷ ପରୀକ୍ଷା ପ୍ରାୟ ୧୫୦ ଘଣ୍ଟା ଲାଗେ । ଏହି ଅବସ୍ଥାରେ ଯେଉଁ ନିର୍ଦ୍ଦିଷ୍ଟ ପଥ ପାଇଁ ଏହା ଅଭିପ୍ରେତ ସେହି ବ୍ୟୋମପଥର ଚାଳକମାନଙ୍କ ହାତରେ ବିମାନକୁ ଛାଡ଼ି ଦିଆଯାଏ । ଏ ସମସ୍ତ ପରୀକ୍ଷା ଶେଷ ହେବାକୁ ପ୍ରାୟ ୪ ମାସ ଲାଗେ ।

ଏଇସବୁ ପରୀକ୍ଷା ଚାଲିଥିଲାବେଳେ କୌଣସି କଥା ବାଦ୍ ଦିଆଯାଏ ନାହିଁ । ନିରାପଦରେ ଓହ୍ଲାଇବା, ବିଭିନ୍ନ ପ୍ରଣାଳୀରେ ମାଲ ବା ଡାକ ଉତାରିବା, ଭୂମିଉପରେ ଚାଲିବା, ସୁରୁଖୁରୁରେ ଆକାଶକୁ ଉଠିବା, ରେଡ଼ିଓ, ରଡ଼ାର, ତାପ, ଚାପ ନିୟନ୍ତ୍ରଣ କିପରି କାର୍ଯ୍ୟକାରୀ ହେଉଛି ଦେଖିବା, ଗୋଟିଏ ଇଂଜିନ୍‌କୁ ବନ୍ଦ କରି ଅନ୍ୟ ଇଂଜିନ୍ ସାହାଯ୍ୟରେ ବିମାନକୁ ଚଳାଇବା, ରାତିରେ ଉଡ଼ିବା, ଝଡ଼ ତୋଫାନରେ ଉଡ଼ିବା ଇତ୍ୟାଦି ପ୍ରତ୍ୟେକ ଦିଗକୁ ଦୃଷ୍ଟି ଦେଇ ଅଭିଜ୍ଞ ଚାଳକମାନେ ନୂଆ ବିମାନଟିର ସାମର୍ଥ୍ୟ ପରୀକ୍ଷା କରନ୍ତି ।

କେବଳ ଯାନ୍ତ୍ରିକ ପରୀକ୍ଷା ନୁହେଁ । ଅନ୍ୟାନ୍ୟ ପ୍ରତ୍ୟେକ ଦିଗକୁ ମଧ୍ୟ ଦୃଷ୍ଟି ଦେବାକୁ ପଡ଼େ । ଯାତ୍ରୀମାନଙ୍କ ଆରାମରେ କୌଣସି ବାଧା ହେଉଛି କି ନାହିଁ ପରିଚାରକମାନଙ୍କ ସ୍ୱଚ୍ଛନ୍ଦ ଯା'ଆସ ପାଇଁ ବିମାନ ମଧ୍ୟରୁ ରାସ୍ତାଗୁଡ଼ିକର ଢାଲୁ ଠିକ୍ ଅଛି କି ନାହିଁ, ଇଂଜିନ ନିୟନ୍ତ୍ରଣର କଳକବ୍‌ଜା ତତ୍‌ସମ୍ପର୍କୀୟ ଯନ୍ତ୍ର ଓ ନିର୍ଦ୍ଦେଶକ ଆଦି ପାଇଲଟଙ୍କ ହାତପାଉଣାରେ ସୁଶୃଙ୍ଖଳଭାବରେ ଅଛି କି ନାହିଁ, ଦରଦାଗୁଡ଼ିକର ରଙ୍ଗ ରୁଚିକର ହୋଇଛି କି ନାହିଁ ଇତ୍ୟାଦି ଯାବତୀୟ ବିଷୟର ପୁଙ୍ଖାନୁପୁଙ୍ଖ ସମୀକ୍ଷଣ ଏହି ଅଭିଜ୍ଞ ପରୀକ୍ଷକମାନଙ୍କ ତୀକ୍ଷ୍ଣ ଦୃଷ୍ଟି ଓ ବିଚାରରୁ ବାଦ୍ ଯାଏ ନାହିଁ । ଏହି ସମସ୍ତ ପ୍ରାଥମିକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସାରିଲାପରେ ବିମାନ ନିୟମିତ ଯାତ୍ରୀବହନ କାର୍ଯ୍ୟ ପାଇଁ ଉପଯୁକ୍ତ ବିବେଚିତ ହୁଏ ।

—o—

# ଚଉଦିଗେ ମଧୁ ଯାଉ ଛୁଇଁ*

ଅଧ୍ୟାପକ ଶ୍ରୀ ଜାନକୀ ମହାନ୍ତି ଏମ୍.ଏ

ପ୍ରସରୁ ମଧୁର ମନ୍ଦ ସମୀର
ମଧୁଧାରା ବହୁ ସିନ୍ଧୁ
ସମୃଦ୍ଧ ହେଉ ଔଷଧ ବନେ
ସ୍ୱଚ୍ଛ ମଧୁର ବିନ୍ଦୁ ।
ହେଉ ମଧୁମୟ ଯାମିନୀ
ପୁଲକ ପୂରିତ ପ୍ରଭାତ ଲଗନ
ମଧୁ ଆନନ୍ଦ ଆସୁ ଘେନି । ୧ ।

ଧରଣୀର ଧୂଳି ଭରି ଉଠୁ ଝଳି
ମଧୁ ଆନନ୍ଦ ଛନ୍ଦେ
ଊର୍ଦ୍ଧ୍ୱେ ନୀଳିମ ଅସୀମ ଆକାଶ
ହସୁ ମଧୁର ଆନନ୍ଦେ ।
ତପନ ଓ ବନଭୂଇଁ
ମଧୁର ଆଲୋକ ବିନ୍ଧି ଆଣୁ ସଦା
ଚଉଦିଗେ ମଧୁ ଯାଉ ଛୁଇଁ । ୨ ।

* "ମଧୁ ବାତା ଋତାୟତେ ମଧୁ କ୍ଷରନ୍ତି ସିନ୍ଧବଃ..."
—ବୈଦିକ ଶ୍ଳୋକର ଅନୁବାଦ ।

—o—

( ୭ମ ପୃଷ୍ଠାର ଅବଶିଷ୍ଟାଂଶ )

ବୈଦ୍ୟୁତିକ ସ୍ରୋତ ନେବାପାଇଁ ବ୍ୟବସ୍ଥା ଥାଏ । ରେଡ଼ିଓ କଂପାନି ସବୁ ଏହି ନିର୍ଦ୍ଧାରିତ ବ୍ୟବସ୍ଥା ପ୍ରତି ସବୁବେଳେ ଦୃଷ୍ଟି ଦିଅନ୍ତି ।

ଡ୍ରାଏଟ୍ ବାଟେରିର କାର୍ଯ୍ୟପ୍ରଣାଳୀ ସମ୍ପୂର୍ଣ୍ଣ ଭିନ୍ନ ଧରଣର । ଡ୍ରାଏ ବାଟେରି ଯେତେବେଳେ ବୈଦ୍ୟୁତିକ ଶକ୍ତି ଯୋଗାଇ ନ ପାରେ, ତାହାକୁ ଆଉ ବ୍ୟବହାର ନ କରି ଫୋପାଡି ଦିଆଯାଏ । କିନ୍ତୁ ଓଏଟ୍ ବାଟେରି ଯେତେବେଳେ ଦୁର୍ବଳ ହୋଇଯାଏ, ସେତେବେଳେ ତାହାକୁ ପୁଣି ଥରେ ଚାର୍ଜ କରିଦେଇ ହୁଏ ଏବଂ ଫଳରେ ଏହା ପୁଣି ବଳବାନ୍ ହୋଇ ଆଗପରି ବୈଦ୍ୟୁତିକ ଶକ୍ତି ଯୋଗାଏ । ଓଏଟ ବାଟେରିକୁ ମଧ୍ୟ ଆକ୍ୟୁମୁଲେଟର୍ କୁହାଯାଏ । ଗୋଟିଏ କାଚ ପାତ୍ରରେ ସଲ୍‌ଫିଉରିକ୍ ଏସିଡ୍ ଓ ଅଳ୍ପ ପାଣି ରଖି ଏଥିରେ ଦୁଇଟି ସୀସାର ପାତିଆ ବୁଡ଼ାଇ ରଖାଯାଏ । ଏହି ଦୁଇଟି ପାତିଆରେ ତାର ସଂଯୋଗ କରି ଦ୍ରବଣ ମଧ୍ୟକୁ ବୈଦ୍ୟୁତିକ ସ୍ରୋତ ପ୍ରବାହିତ କରାଯାଏ । ଯେଉଁ ପାତିଆ ମଧ୍ୟ ଦେଇ ବୈଦ୍ୟୁତିକ ସ୍ରୋତ ଦ୍ରବଣ ମଧ୍ୟକୁ ପ୍ରବେଶ କରେ ତାହାକୁ ଆନୋଡ୍ କୁହାଯାଏ ଏବଂ ଯେଉଁ ପାତିଆ ମଧ୍ୟ ଦେଇ ବୈଦ୍ୟୁତିକ ସ୍ରୋତ ଦ୍ରବଣରୁ ଯାଏ, ତାହାକୁ କାଥୋଡ୍ କହନ୍ତି । ଏହାର ରାସାୟନିକ ପ୍ରକ୍ରିୟା ଜଟିଳ । ଓଏଟ୍ ବାଟେରିରୁ ଯେତେବେଳେ ଆଉ ବୈଦ୍ୟୁତିକ ସ୍ରୋତର ପ୍ରବାହ ହୁଏ ନାହିଁ, ସେତେବେଳେ ବାଟେରିକୁ କୌଣସି ପାଓ୍ୱାର ହାଉସ୍‌କୁ ନିଆହୁଏ ଏବଂ ସେଠାରେ ଦ୍ରବଣ ମଧ୍ୟକୁ ବୈଦ୍ୟୁତିକ ସ୍ରୋତ ଉପରୋକ୍ତ ଉପାୟରେ ପ୍ରବାହିତ ହୋଇ ଯେଉଁ ରାସାୟନିକ ଶକ୍ତି ଉତ୍ପନ୍ନ ହୋଇଥାଏ ତାହା ସଂଚିତ ହୋଇ ରହେ ପୁଣି ଥରେ ଏହି ବାଟେରି ବ୍ୟବହାର ହେବା ପର୍ଯ୍ୟନ୍ତ । ବାଟେରିର ଦୁଇଟି ଆନୋଡ୍‌ରେ ତାର ଲଗାଇଲେ ବାଟେରି ମଧ୍ୟରେ ସଂଚିତ ହୋଇଥିବା ରାସାୟନିକ ଶକ୍ତି ବୈଦ୍ୟୁତିକ ଶକ୍ତି ରୂପରେ ତାରରେ ପ୍ରବାହିତ ହୁଏ । ମଟର ଗାଡ଼ିର ଡାଇନେମୋ ମଧ୍ୟ ବାଟେରିକୁ ଚାର୍ଜ କରିପାରେ । ଏହି ଧରଣର ବାଟେରିକୁ ଇଚ୍ଛାନୁଯାୟୀ ଦୁଇ ଭୋଲ୍‌ଟଠାରୁ ଆରମ୍ଭ କରି ୧୨ ଭୋଲ୍‌ଟ୍ ପର୍ଯ୍ୟନ୍ତ କରାଯାଏ । ଓଏଟ୍ ବାଟେରି ରେଡ଼ିଓ, ମଟର ଓ ଅନ୍ୟାନ୍ୟ ଯନ୍ତ୍ରପାତିରେ ବ୍ୟବହୃତ ହୁଏ ।

ରେଡିଓ ରିସିଭରରେ ସାଧାରଣତଃ ୬ ଭୋଲ୍‌ଟ୍‌ର ଓଏଟ୍ ବାଟେରି ବ୍ୟବହୃତ ହୁଏ । ଡ୍ରାଏ ବାଟେରିରେ ଯେପରି ଦୁଇଟି ବୈଦ୍ୟୁତିକ ସ୍ରୋତ (୯୦ ଓ ୧.୫ ଭୋଲଟ୍ ) ନେବାପାଇଁ ବ୍ୟବସ୍ଥା ଥାଏ, ଏଥିରେ ସେପରି ଦରକାର ହୁଏ ନାହିଁ, କାରଣ ଯେଉଁ ରେଡିଓ ରିସିଭର ସବୁ ଓଏଟ୍ ବାଟେରି ଉଦ୍ଦେଶ୍ୟରେ ତିଆରି ହୋଇଥାଏ ସେମାନଙ୍କର ଭଲ୍‌ଭ୍‌ର କାଥୋଡ୍ ବା ଫିଲାମେଣ୍ଟକୁ ଉତ୍ତାପ ଦେବାପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା ଥାଏ । ଆଜକାଲି ଅନେକ ରେଡ଼ିଓ ରିସିଭର୍, ଏ.ସି , ଡ଼.ସି, ଡ୍ରାଏ ବାଟେରି ଓ ଓଏଟ୍ ବାଟେରି, ଏହି ସମସ୍ତ ବୈଦ୍ୟୁତିକ ଶକ୍ତି ଦ୍ୱାରା ଚାଳିତ ହୋଇପାରେ ।

ରେଡ଼ିଓ ବାଟେରି ତିଆରି କରିବା କଂପାନୀମାନଙ୍କ ମଧ୍ୟରେ 'ନେସ୍‌ନାଲ କାର୍ବନ କଂପାନୀ' ଅନ୍ୟତମ । ଏମାନେ ଏଭେରେଡ଼ି ବ୍ୟାଟେରି ପ୍ରସ୍ତୁତ କରନ୍ତି । ଓଏଟ୍ ବାଟେରି ପ୍ରସ୍ତୁତ କରିବା କଂପାନିମାନଙ୍କ ମଧ୍ୟରେ ଏକ୍‌ସାଇଡ୍ ଓ ଷ୍ଟାଣ୍ଡାର୍ଡ ପ୍ରସିଦ୍ଧ ।

କିଛିଦିନ ତଳେ ଦିଲ୍ଲୀରେ ଗୋଟିଏ ଆନ୍ତର୍ଜାତିକ ସଭା ହୋଇ ଭାରତରେ ଉଇଣ୍ଡମିଲ ବା ପବନ ଦ୍ୱାରା ଚାଳିତ କଳ ସବୁ ବସାଇବା ଠିକ୍ ହୋଇଅଛି ।

ଏହି ଉଇଣ୍ଡ୍‌ମିଲ୍ ଗୋଟିଏ ବାଟେରି (ଓଏଟ୍)କୁ ଖୁବ୍ ଶୀଘ୍ର ଚାର୍ଜ କରିପାରେ ଓ ଅନ୍ୟାନ୍ୟ ଅସାଧାରଣ କାର୍ଯ୍ୟସବୁ ସମ୍ପନ୍ନ କରିପାରେ । ଏହା ଗୋଟିଏ ଘର ପାଇଁ ପ୍ରଚୁର ପରିମାଣରେ ବୈଦ୍ୟୁତିକ ଶକ୍ତି ଯୋଗାଇପାରେ । ଇଉରୋପରେ ଅଷ୍ଟ୍ରିଆ, ହଙ୍ଗେରୀ, ପ୍ରଭୃତି ଦେଶମାନଙ୍କରେ, ଅଷ୍ଟ୍ରେଲିଆ ଓ କାନଡ଼ାରେ ଏହି ଉଇଣ୍ଡ୍ ମିଲ୍‌ର ଖୁବ୍ ପ୍ରଚଳନ ଅଛି । ଭାରତରେ ଏହି ଉଇଣ୍ଡ୍‌ମିଲ୍‌ର ବ୍ୟବହାର ଓ ପ୍ରସାର ହେଲେ, ଏହାଦ୍ୱାରା ଯେ ଗୃହଶିଳ୍ପର ବିକାଶ ହେବ, ଏଥିରେ ସନ୍ଦେହ ନାହିଁ ।

# ମୃତ୍ୟୁବାଲି (Death Sand)

ଶ୍ରୀ ପ୍ରଫୁଲ୍ଲଚନ୍ଦ୍ର ଦେବବର୍ତ୍ତୀ

ବିଜ୍ଞାନର ଅଗ୍ରଗତି ମାନବ ସମାଜକୁ ଏକ ନୂତନ ଯୁଗରେ ଆଣି ପହଞ୍ଚାଇଛି । ତାହା ଆଜି "ପରମାଣୁ ଯୁଗ" ନାମରେ ଅଭିହିତ । ଏହି ପରମାଣୁ ଯୁଗର ଧ୍ୱଂସାଭିମୁଖୀ ଗତି ମନୁଷ୍ୟ ସମାଜରେ ଏକ ଆତଙ୍କ ସୃଷ୍ଟି କରି ଦେଇଛି । ମନୁଷ୍ୟ ପ୍ରତି ମୁହୂର୍ତ୍ତିରେ ନିଜର ପତନକୁହିଁ ସ୍ୱପ୍ନ ଦେଖୁଛି । ···ଇତିହାସ ଯୁଗେ ଯୁଗେ ରଚି ଯାଇଛି କେବଳ ଯୁଦ୍ଧର ଗ୍ରନ୍ଥ । ହିଂସାର ରାଜତ୍ୱ ମନୁଷ୍ୟକୁ ପଙ୍ଗୁ କରି ଦେଇଛି । ମନୁଷ୍ୟ ଆଜି ନିଜକୁ ସଭ୍ୟ ବୋଲଉଛି । କିନ୍ତୁ ଏହା ତାର ଅହମିକା ଛଡ଼ା ଅନ୍ୟ କିଛି ନୁହେଁ । ଆଦିମ ମନୁଷ୍ୟଙ୍କ ତୁଳନାରେ କେଉଁ ଗୁଣରେ ମାନବ ଆଜି ସଭ୍ୟ ?... ତାହାର ହିଂସା, ମୂର୍ଖତା ଓ ବ୍ୟବହାର, ଆଦିମ ଯୁଗର ମଣିଷଠାରୁ ବି ହୀନ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

ପରମାଣୁ ତତ୍ତ୍ୱର ଆବିଷ୍କାର ସଙ୍ଗେ ସଙ୍ଗେ, ଦୁଇଗୋଟି ମାରାତ୍ମକ ଅସ୍ତ୍ର ସୃଷ୍ଟି ହୋଇଛି । ସେଗୁଡ଼ିକ ହେଉଛି ପରମାଣୁ ବୋମା ଓ ହାଇଡ୍ରୋଜେନ୍ ବୋମା । ଏପରିକି ମହା ହାଇଡ୍ରୋଜେନ୍ ବୋମା (Super Hydrogen Bomb) ବି ସୃଷ୍ଟି ହୋଇ ସାରିଲାଣି । ଏହା ବ୍ୟତୀତ ନାଇଟ୍ରୋଜେନ୍ ବୋମା ଓ କୋବାଲ୍ଟ ବୋମା ଇତ୍ୟାଦି ଆହୁରି ମାରାତ୍ମକ ଅସ୍ତ୍ର ସୃଷ୍ଟି କରିବା ପାଇଁ ଅବିଶ୍ରାନ୍ତ ଗତିରେ ଗବେଷଣା ଲାଗିଛି । ଫରାସୀମାନେ ପରମାଣୁ-ବୋମାର ପରୀକ୍ଷା ବାୟୁ ମଣ୍ଡଳକୁ ଦୂଷିତ କରି ଦେବାପାଇଁ ଯେଉଁ ଆଶଙ୍କା ଦେଇଥିଲି, ବିକାନୀ ଦ୍ୱୀପପୁଞ୍ଜରେ ହାଇଡ୍ରୋଜେନ୍ ବୋମାର ବିସ୍ଫୋରଣରେ ଜାପାନୀ ଧୀବରମାନେ ଏକ ପ୍ରକାର ଧୂଳିକଣା ଦ୍ୱାରା ଆକ୍ରାନ୍ତ ହୋଇ ମରଣାନ୍ତିକ ଅବସ୍ଥାରେ ପଡ଼ିଥିଲେ ଏବଂ ଶେଷରେ ଜଣେ ପ୍ରାଣ ହରାଇଥିଲା । ଏହିପରି ଧୂଳିକଣା ପରମାଣୁ ବୋମା ଓ ହାଇଡ୍ରୋଜେନ୍ ବୋମାର ବିସ୍ଫୋରଣରେ ସୃଷ୍ଟି ହୋଇଥାଏ । ଏହା ମାନବ ଜୀବନ ଉପରେ ଅତୀବ ମାରାତ୍ମକ ଅଟେ । ଏହିପରି ମାରାତ୍ମକ ଧୂଳିକଣା ୟୁରାନିଏମ୍‌ରୁ ପ୍ଲୁଟୋନିଏମ୍‌କୁ ରୂପାନ୍ତରିତ କଲା ସମୟରେ, ୟୁରାନିଏମ୍‌ର ଛିନ୍ନ ବିଚ୍ଛିନ୍ନ ପରମାଣୁରୁ ସୃଷ୍ଟି ହୋଇଥାଏ । ଏଥିରୁ ମାରଣାସ୍ତ୍ର ସୃଷ୍ଟି କରିବାରେ ଯେତେ ସହଜ ଓ କୌଶଳ-ପୂର୍ଣ୍ଣ, ଏହା କିପରି ପୃଥକ୍ ଭାବରେ ଜାତ ହୋଇପାରିବ ପରମାଣୁବିତ୍‌ଙ୍କ ନିକଟରେ ଏକ ସମସ୍ୟା ହୋଇ ପଡ଼ିଛି । ପରମାଣୁର ଧୂଳିରୁ ନିର୍ମିତ ହୋଇ ପାରିବା ଏହି ମାରଣାସ୍ତ୍ର "ମୃତ୍ୟୁବାଲି" ବା ଇଂରାଜୀରେ "Death Sand" ନାମରେ ଖ୍ୟାତ । ଏହାକୁ ବ୍ୟବହାର କରି ଅଳ୍ପ ସମୟରେ ପୃଥିବୀ ପୃଷ୍ଠରୁ ମନୁଷ୍ୟ ଜାତିକୁ ଲୋପ କରିଦେବା କିଛି ଅସମ୍ଭବ ନୁହେଁ ।

ପରମାଣୁର ଗଠନ ବିଷୟରେ ଅନେକ କିଛି ଆଲୋଚନା ସଂସାରରେ ପ୍ରକାଶ ପାଇଛି । ସୁତରାଂ ସଂସାରର ପାଠକଗଣଙ୍କୁ ସେ ବିଷୟରେ ବିଶେଷ କିଛି କହିବା ଏଠାରେ ଆବଶ୍ୟକ ପଡ଼ିବ ନାହିଁ । ଆମେ ଜାଣୁ ପ୍ରତ୍ୟେକ ପରମାଣୁ, ପ୍ରୋଟନ୍, ନ୍ୟୁଟ୍ରାନ୍ ଓ ଇଲେକ୍‌ଟ୍ରନ ନାମକ ଅତି କ୍ଷୁଦ୍ର ବସ୍ତୁଦ୍ୱାରା ନିର୍ମିତ । ନ୍ୟୁଟ୍ରନ୍ ଓ ପ୍ରୋଟନ୍ ମିଳି ପରମାଣୁର କେନ୍ଦ୍ରସ୍ଥଳରେ ଅବସ୍ଥିତ । ତାହାକୁ 'ଆଦ୍ୟ ବସ୍ତୁ' ବା Nucleus କୁହାଯାଏ । ଆଦ୍ୟବସ୍ତୁକୁ କେନ୍ଦ୍ର-କରି ବୃତ୍ତସମ କକ୍ଷରେ ନିର୍ଦ୍ଦିଷ୍ଟ ଗତିରେ ଇଲେକ୍‌ଟ୍ରନଗୁଡ଼ିକ ଘୁରୁଥାନ୍ତି । ଏହି ଇଲେକ୍‌ଟ୍ରନ, ପ୍ରୋଟନ୍ ଓ ନ୍ୟୁଟ୍ରନ୍ ଇତ୍ୟାଦି ପ୍ରତ୍ୟେକ ପରମାଣୁରେ ନିର୍ଦ୍ଦିଷ୍ଟ ପରିମାଣରେ ଥାଏ । ପ୍ରତ୍ୟେକ ପଦାର୍ଥର ଧର୍ମ, ପ୍ରତିକ୍ରିୟା ଇତ୍ୟାଦି, ସେହି ପଦାର୍ଥର ପରମାଣୁ ଉପରେ ନିର୍ଭର କରିଥାଏ ।

ସବୁଠାରୁ ଅତି ସରଳ ପରମାଣୁବିଶିଷ୍ଟ ମୌଳିକ ବସ୍ତୁ ଉଦ୍‌ଜାନ ଅଟେ । ଏହାର ପରମାଣୁ ଗୋଟିଏ ମାତ୍ର ପ୍ରୋଟନ୍ ନେଇ ଗଠିତ । ତାପରେ ହିଲିଏମ୍ ନାମକ ମୌଳିକ ବସ୍ତୁର ପରମାଣୁ ୨ଟି ପ୍ରୋଟନ୍ ଓ ୨ଟି ନ୍ୟୁଟ୍ରନ୍ ନେଇ ଗଠିତ । ଉଦ୍‌ଜାନ ଓ ହିଲିଏମ୍ ଲଘିଷ୍ଠ ମୌଳିକ-ବସ୍ତୁ ଅଟେ । ଏହିପରି ପ୍ରୋଟନ୍ ଓ ନ୍ୟୁଟ୍ରନ୍‌ର ସଂଖ୍ୟା ଲଘିଷ୍ଠ ମୌଳିକ ବସ୍ତୁରୁ କ୍ରମଶଃ ଓଜନ ମୌଳିକ ବସ୍ତୁଯାଏ ବୃଦ୍ଧି ପାଉଥାଏ । ୟୁରାନିଏମ୍ ହେଉଛି ସବୁଠାରୁ ଓଜନପୂର୍ଣ୍ଣ ମୌଳିକ ବସ୍ତୁ । ଯଦି କୌଣସି ପ୍ରକାରେ ପରମାଣୁର ଆଦ୍ୟବସ୍ତୁରୁ ନ୍ୟୁଟ୍ରନ୍ ଓ ପ୍ରୋଟନ୍ ସଂଖ୍ୟା ପରିବର୍ତ୍ତନ କରା-ଯାଏ, ତେବେ ଗୋଟିଏ ମୌଳିକବସ୍ତୁରୁ ଅନ୍ୟ ଏକ ମୌଳିକବସ୍ତୁ ସହଜରେ ସୃଷ୍ଟି ହୋଇ ପାରିବ । ଏପରିକି ଏହି ପ୍ରଥା ଦ୍ୱାରା ଲୁହାରୁ ସୁନା ତିଆରି କରିବା କିଛି ଅସମ୍ଭବ ନୁହେଁ । ବିଜ୍ଞାନ ସେଥିପାଇଁ ଗବେଷଣା ଚଳାଇଛି । ସେହି ପରି ୟୁରାନିଏମ୍‌ରୁ ବିଜ୍ଞାନାଗାରରେ ଅନେକ କିଛି ନୂତନ ଧରଣର ମୌଳିକବସ୍ତୁ ସୃଷ୍ଟି ହୋଇ ପାରିଛି ।

ୟୁରାନିଏମ୍‌ରୁ ପ୍ଲୁଟୋନିଏମ୍‌କୁ ସୃଷ୍ଟି କରିବା ସମୟରେ ଗୋଟିଏ ନ୍ୟୁଟ୍ରନକୁ ପ୍ରୟୋଗ କରାଯାଏ । ପ୍ରତିକ୍ରିୟା ସମୟରେ ଅନେକ ଧୂଳିକଣାସମ କ୍ଷୁଦ୍ର ବସ୍ତୁଗୁଡ଼ିକ, ନ୍ୟୁଟ୍ରନ ଦ୍ୱାରା ଆଘାତପ୍ରାପ୍ତ ପରମାଣୁରୁ ଜାତ ହୋଇଥାଏ । ସେଗୁଡ଼ିକ ଅତୀବ ମାରାତ୍ମକ ଅଟେ । ଏଗୁଡ଼ିକ ମାରଣାସ୍ତ୍ରରୂପେ ବ୍ୟବହାର ହୋଇ ପାରିବ ବୋଲି ଭେନିସ୍‌ର ପଦାର୍ଥ ବୈଜ୍ଞାନିକ, 'ହେନ୍‌ଜ ଥିରିଂ' ନିଜ ମତ ପ୍ରକାଶ କରିଥିଲେ । ସେହି ମତକୁ ନେଇ 'ଲୁଇସ୍‌ ଏନ୍‌ ରାଇଡ୍‌ନର', ଏକ ଲେଖା ପ୍ରକାଶ କରିଥିଲେ । ଏହିଗୁଡ଼ିକ ହେଉଛି ମୃତ୍ୟୁବାଲି (Death sand) । ଏହା ବ୍ୟୋମଯାନ ଦ୍ୱାରା, ଶତ୍ରୁ ସହରଗୁଡ଼ିକରେ ଅତି ସହଜରେ ଚଳାଯାଇ ପାରେ ।

ଏହି ମୃତ୍ୟୁବାଲିଗୁଡ଼ିକ ଅତୀବ କ୍ଷୁଦ୍ର ଓ ଅଦୃଶ୍ୟ ଅଟେ । ବାୟୁମଣ୍ଡଳରେ ଘୂରି ବୁଲୁଥିବା ସମୟରେ, ସେଗୁଡ଼ିକ କିଛି ଶବ୍ଦ ଜାତ କରନ୍ତି ନାହିଁ । ଏହାଙ୍କ ଦେହରୁ ଏକ ପ୍ରକାର ମାରାତ୍ମକ ବିକିରଣ ଜାତ ହେଉଥାଏ । ସୁତରାଂ ନିଃଶ୍ୱାସ-ପ୍ରଶ୍ୱାସ ନେବା ସମୟରେ ଏହା ମନୁଷ୍ୟକୁ ମାରାତ୍ମକଭାବରେ ଆକ୍ରମଣ କରେ । ଯଦି ମନୁଷ୍ୟ ଏହି ଆକ୍ରମଣରୁ ବଞ୍ଚିବାକୁ ଚେଷ୍ଟା କରେ, ତେବେ ତାକୁ ନିଜର ନିଃଶ୍ୱାସ ପ୍ରଶ୍ୱାସକୁ ବନ୍ଦ କରି ସେହି ସ୍ଥାନ ତତ୍‌କ୍ଷଣାତ୍‌ ତ୍ୟାଗ କରିବାକୁ ହେବ । କିମ୍ବା ଏଥିପାଇଁ ସ୍ୱତନ୍ତ୍ର ପୋଷାକ ଓ ସ୍ୱତନ୍ତ୍ର ନିଃଶ୍ୱାସ ପ୍ରଶ୍ୱାସ ଯନ୍ତ୍ର ବ୍ୟବହାର କଲେ ଏଥିରୁ ମୁକ୍ତି ପାଇ ପାରିବ ।

ଉକ୍ତ ମୃତ୍ୟୁବାଲିଗୁଡ଼ିକ ଓଜନହୀନ ପଦାର୍ଥ ଅଟେ । ଏଗୁଡ଼ିକ ଅତି ସହଜରେ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ସ୍ଥାନାନ୍ତରିତ କରାଯାଇ ପାରେ । ସୁତରାଂ ଧ୍ୱଂସ ଉଦ୍ଦେଶ୍ୟରେ ଏହା ଏକ ଉତ୍କୃଷ୍ଟ ଅସ୍ତ୍ର ଅଟେ । ପରମାଣୁ ଗବେଷକ 'ରାଇଡ୍‌ନର' କହିଛନ୍ତି ଯେ, ଗୋଟିଏ ମାସରେ ବହୁତ କିଛି ମୃତ୍ୟୁଧୂଳି ସୃଷ୍ଟି ହୋଇ ପାରିବ ଯାହାଙ୍କ ପ୍ରାୟ ୧୪୪ ମାଇଲ ପରିସର ସ୍ଥାନକୁ ଆକ୍ରାନ୍ତ କରି ପାରିବ । ଏପରିକି ଏହା ପ୍ରତି ମାସରେ ଦୁଇ ତିନୋଟି ବଡ଼ ବଡ଼ ସହରକୁ ବି ଦୂଷିତ କରି ଦେଇ ପାରିବ । କିନ୍ତୁ ବର୍ତ୍ତମାନର ସମସ୍ୟା ହେଉଛି ପରମାଣୁରୁ କିପରି ଛିନ୍ନ ଅଂଶ ରାସାୟନିକ ପ୍ରଥା ଦ୍ୱାରା ପୃଥକ୍ ହୋଇ ପାରିବ ? ଯଦି ଏହା ହୋଇପାଏ ତେବେ, ସେଥିରୁ ମୃତ୍ୟୁବାଲି ତିଆରି କରିବାପାଇଁ ବେଶି ସମୟ ଲାଗିବ ନାହିଁ । କିନ୍ତୁ ଏହାର ସଫଳତା ଭବିଷ୍ୟତ ଉପରେହିଁ ନିର୍ଭର କରେ । ମୃତ୍ୟୁବାଲି ନିର୍ମିତ ହୋଇଯାଇଲା ପରେ ପରମାଣୁ ଓ ହାଇଡ୍ରୋଜେନ୍ ବୋମାର ମହତ୍ତ୍ୱ ଆଉ ରହିବ ନାହିଁ—ଏହା ନିଃସନ୍ଦେହରେ କୁହାଯାଇପାରେ ।

ଆଜିର ଯୁଗ ଧ୍ୱଂସମୁଖୀ ମାରଣାସ୍ତ୍ର ଆବିଷ୍କାର କରିବାରେ ବ୍ୟଗ୍ର ହୋଇପଡ଼ିଛି । ଏହାର ପ୍ରଭାବ ମନୁଷ୍ୟ ସମାଜ-ଭିତରେ ଏକ ବିଭ୍ରାଟ ସୃଷ୍ଟି କରି ଦେଇଛି । ପୃଥିବୀର ଏହି ସବୁ ବ୍ୟାପାର ଦେଖି ଜଣେ ବୈଜ୍ଞାନିକ କହିଛନ୍ତି ଯେ, "ଏହି ପରମାଣୁ ଅସ୍ତ୍ରଗୁଡ଼ିକର ପ୍ରୟୋଗ ଦ୍ୱାରା ପୃଥିବୀ-ପୃଷ୍ଠରୁ ମନୁଷ୍ୟ ଜାତି ନିଶ୍ଚିହ୍ନ ହୋଇଯିବ । ଯଦି କିଏ ବଞ୍ଚି ରହନ୍ତି ତେବେ ସେମାନେ ଅଟନ୍ତି ସୁମେରୁ ଓ କୁମେରୁର ଅଧିବାସୀ ଏବଂ ଅସଭ୍ୟ ଆଦିମ ମନୁଷ୍ୟ । ସେମାନେ ଏହି ପୃଥିବୀର ବାସିନ୍ଦା ହୋଇ ରହିବେ ।"

—o—

(୧୦ ପୃଷ୍ଠାର ଅବଶିଷ୍ଟାଂଶ)

ନିର୍ମିତ । ଧାର ଏବଂ ଉଭୟ ପାର୍ଶ୍ୱର ଉଦ୍‌ଗତ ଚିହ୍ନାଦି ଶୁଭ୍ରସ୍ୱର୍ଣ୍ଣ ଏବଂ ପଦକର ନାମଟି ସ୍ୱର୍ଣ୍ଣାଭ ରୌପ୍ୟରେ ଚିହ୍ନିତ ହେବ । ୧½ ଇଞ୍ଚ ଓସାର ଗୋଲାପୀ ଫିତା ସାହାଯ୍ୟରେ ପୁରୁଷମାନେ ଏହାକୁ ବାଁ ଛାତିରେ ଏବଂ ସ୍ତ୍ରୀମାନେ ବାଁ କାନ୍ଧରେ ପିନ୍ଧିବେ । ସରକାରୀ କର୍ମଚାରୀଙ୍କ ସମେତ ଯେ କେହି ଭାରତୀୟ ଯେ କୌଣସି କ୍ଷେତ୍ରରେ ଅତି ଉଚ୍ଚ ଧରଣର କୃତିତ୍ୱ ଅର୍ଜନ କଲେ ଏହି ପଦବୀ ଲାଭ କରିବେ ।

**ପଦ୍ମ ଭୂଷଣ**—ପଦକର ଆକାର ଓ ଆୟତନ ପ୍ରାୟ ପଦ୍ମବିଭୂଷଣ ପରି । ପଦ୍ମ ଫୁଲର ଚିହ୍ନ ଓ ଉଦ୍‌ଗତ ମୁଦ୍ରଣ ଠିକ୍ ସେହିପରି । ଧାର ଓ ସଙ୍କେତ ଆଦି ସାଧାରଣ ସ୍ୱର୍ଣ୍ଣ ନିର୍ମିତ ହେବ । ଗୋଲାପୀ ଫିତା ମଝିରେ ଗୋଟିଏ ଧଳା ପଟି ରହିବ । ଯେ କୌଣସି କ୍ଷେତ୍ରରେ ଉଚ୍ଚ ଧରଣର କୃତିତ୍ୱ ପାଇଁ ଏହାଦିଆଯିବ ।

**ପଦ୍ମ ଶ୍ରୀ**—ଆକାର ଓ ଆୟତନ 'ପଦ୍ମ ବିଭୂଷଣ' ପରି ଗୋଲାକାର, ବ୍ରୋଞ୍ଜ ନିର୍ମିତ । ପଦ୍ମ ଫୁଲର ଉପରେ ପଦ୍ମ ଓ ତଳେ ଶ୍ରୀ ଉଦ୍‌ଗତ ରହିବ । ଧାର, ସଙ୍କେତ ଓ ଉଭୟ ପାର୍ଶ୍ୱର ଉଦ୍‌ଗତ ଚିହ୍ନାଦି ନିଷ୍କଳଙ୍କ ଇସ୍ପାତରେ ନିର୍ମିତ ହେବ । ଯେ କୌଣସି କ୍ଷେତ୍ରରେ ବିଶେଷ କୃତିତ୍ୱ ପାଇଁ ଏହା ପ୍ରଦତ୍ତ ହେବ । ରାଷ୍ଟ୍ରପତି ନିଜ ହାତରେ ନିଜ ମୋହରାଙ୍କିତ ସନନ୍ଦ ସହ ଏହି ପଦକଗୁଡ଼ିକ ଯୋଗ୍ୟ ବ୍ୟକ୍ତିମାନଙ୍କୁ ପ୍ରଦାନ କରିବେ ।

—o—

ଡାକଟିକଟ ସଂଗ୍ରହ—

# ବିଶ୍ୱ ବନବିଜ୍ଞାନ କଂଗ୍ରେସ

ଶ୍ରୀ ରଘୁନାଥ ପାଢ଼ି ଶର୍ମା

ଗତ ଡିସେମ୍ବର ମାସ ୧୧ ତାରିଖରେ ବିଶ୍ୱ ବନବିଜ୍ଞାନ କଂଗ୍ରେସର ଚତୁର୍ଥ ଅଧିବେଶନ, ଭାରତୀୟ ବନ ବିଜ୍ଞାନ ଅନୁଷ୍ଠାନର କେନ୍ଦ୍ର ଗବେଷଣା ପୀଠ ଦେହ୍‌ରାଦୁନଠାରେ ଅନୁଷ୍ଠିତ ହୋଇଥିଲା। ଭାରତର ରାଷ୍ଟ୍ରପତି ଡକ୍‌ଟର ରାଜେନ୍ଦ୍ରପ୍ରସାଦ ଉକ୍ତ ସମ୍ମିଳନୀ ଉଦ୍‌ଘାଟନ କରିଥିଲେ। ଏହି ବିଶ୍ୱ ଅଧିବେଶନର ସ୍ମୃତି ଉଦ୍ଦେଶ୍ୟରେ ଭାରତୀୟ ଡାକ ଓ ତାର ବିଭାଗ ଉକ୍ତ ଦିନ ଗୋଟିଏ ଦୁଇଅଣିଆ ଡାକଟିକଟ ପ୍ରକାଶ କଲେ। ଗୋଟିଏ ସଭାର ସ୍ମୃତି ନେଇ ସ୍ମୃତି-ଟିକଟ ପ୍ରକାଶ କରିବା ଭାରତୀୟ ଡାକ ଓ ତାର ବିଭାଗର ଏଇ ପ୍ରଥମ ଚେଷ୍ଟା। ଅନ୍ୟାନ୍ୟ ଦେଶରେ କେବେ କେବେ ବିଶିଷ୍ଟ ସାଧାରଣ ସଭା ହେଲେ ବି ସେଥି ନିମନ୍ତେ ସ୍ୱତନ୍ତ୍ର ସ୍ମୃତିଟିକଟ ପ୍ରକାଶ ପାଇଥାଏ। ଏପରିକି କବିମାନଙ୍କର ଜନ୍ମ ବା ମୃତ୍ୟୁ ବାର୍ଷିକୀ ଉତ୍ସବ ଉଦ୍ଦେଶ୍ୟରେ ମଧ୍ୟ ସ୍ମୃତି ଟିକଟ ବାହାରି ଥାଏ।

## ବିଶ୍ୱ ବନବିଜ୍ଞାନ କଂଗ୍ରେସର ଇତିହାସ:—

ବିଶ୍ୱ ବନବିଜ୍ଞାନ କଂଗ୍ରେସର ପ୍ରଥମ ଅଧିବେଶନ ଆନ୍ତର୍ଜାତିକ କୃଷିଅନୁଷ୍ଠାନ ଆନୁକୂଲ୍ୟରେ ଇଟାଲିର ରାଜଧାନୀ ରୋମଠାରେ ସର୍ବପ୍ରଥମେ ୧୯୨୬ ଖ୍ରୀ: ରେ ବସିଥିଲା। ଦୀର୍ଘ ଦଶ ବର୍ଷ ପରେ ୧୯୩୬ରେ ହଙ୍ଗେରୀର ବୁଦାପେଷ୍ଟ ଠାରେ ବିଶ୍ୱ ବନବିଜ୍ଞାନ କଂଗ୍ରେସର ଦ୍ୱିତୀୟ ଅଧିବେଶନ ଅନୁଷ୍ଠିତ ହୋଇଥିଲା। ପରେ ଦ୍ୱିତୀୟ ପୃଥିବୀ ଯୁଦ୍ଧ ହେତୁ କୌଣସି ଅଧିବେଶନ ହୋଇ ପାରିଲା ନାହିଁ। ଦୀର୍ଘ ୧୩ ବର୍ଷ ପରେ ୧୯୪୯ରେ ମିଳିତ ଜାତିସଙ୍ଘର ଖାଦ୍ୟ ଓ କୃଷି ଅନୁଷ୍ଠାନର ଆନୁକୂଲ୍ୟରେ ଫିନ୍‌ଲାଣ୍ଡର ହେଲସିଙ୍କି ନଗରୀରେ ତୃତୀୟ ବିଶ୍ୱ ବନବିଜ୍ଞାନ କଂଗ୍ରେସ ବସିଥିଲା। ୧୯୫୧ ରେ ରୋମ ନଗରରେ ମିଳିତ ଜାତିସଙ୍ଘର ଖାଦ୍ୟ ଓ କୃଷି ଅନୁଷ୍ଠାନର ଷଷ୍ଠ ବାର୍ଷିକ ଅଧିବେଶନ ହୋଇଥିଲା। ଉକ୍ତ ସଭାରେ ଯୋଗ ଦେବାକୁ ଯାଇଥିବା ଭାରତୀୟ ପ୍ରତିନିଧିଗଣ ଚତୁର୍ଥ ବିଶ୍ୱ ବନ ବିଜ୍ଞାନ କଂଗ୍ରେସ ଭାରତରେ ହେଉ ବୋଲି ପ୍ରସ୍ତାବ କରିଥିଲେ। ଉକ୍ତ ପ୍ରସ୍ତାବ ୧୯୫୨ରେ ଗୃହୀତ ହେଲା ଏବଂ ତାରି ଫଳରେ ଦେହ୍‌ରାଦୁନସ୍ଥ ଅରଣ୍ୟ ଗବେଷଣା ଅନୁଷ୍ଠାନରେ ଚତୁର୍ଥ ଅଧିବେଶନ ବସିଲା। ଏହି କଂଗ୍ରେସରେ ୪୮ ଗୋଟି ଦେଶର ପ୍ରାୟ ଛଅଶତ ପ୍ରତିନିଧି ଯୋଗ ଦେଇଥିଲେ। ଏହି ଅଧିବେଶନରେ ପଠିତ ହେବା ପାଇଁ ପୃଥିବୀରୁ ବିଜ୍ଞ ଆରଣ୍ୟକ ମାନଙ୍କଠାରୁ ୧୭୦ ଗୋଟି ଗବେଷଣାମୂଳକ ପ୍ରବନ୍ଧ ଆସିଥିଲା।

## ପ୍ରକାଶିତ ଡାକଟିକଟର ଚିତ୍ର —

ଟିକଟଟିରେ ଦେହ୍‌ରାଦୁନସ୍ଥ ଅରଣ୍ୟ ଗବେଷଣାଗାରର ବିରାଟ ଭବନର ଦୃଶ୍ୟ ଦିଆ ଯାଇଛି। ଏହି ଗବେଷଣାଗାରଟି ୧୯୦୬ରେ ସ୍ଥାପିତ ହୋଇଥିଲା। ଟିକଟର ଉପରଭାଗରେ **4th World Forestry Congress, Dehra-Dun, 1954** ବୋଲି ଲେଖାଯାଇଛି ଏବଂ ତା ତଳକୁ ରାଷ୍ଟ୍ରଭାଷାରେ 'ବିଶ୍ୱ ବନବିଜ୍ଞାନ କଂଗ୍ରେସ, ଦେହ୍‌ରାଦୁନ' ବୋଲି ଉଲ୍ଲେଖ ଅଛି।

ଡାକଟିକଟଟି ଯେଉଁ ଉଦ୍ଦେଶ୍ୟରେ ପ୍ରକାଶିତ ହୋଇଛି ସେ ବିଷୟ ଡାକଟିକଟ ସଂଗ୍ରାହକ ଜାଣିବା ଉଚିତ। ତାର ପୂର୍ବ ଇତିହାସ ଏବଂ ଟିକଟରେ ପ୍ରକାଶିତ ଚିତ୍ରର ପ୍ରାଧାନ୍ୟ, ତାର ଇତିହାସ ଓ ଅବସ୍ଥାନ ବିଷୟରେ ଜ୍ଞାନ ଲାଭ କରିବା ଡାକଟିକଟ ସଂଗ୍ରାହକର ପ୍ରଧାନ କର୍ତ୍ତବ୍ୟ।

## ଓଡ଼ିଶା ଫିଲାଟେଲିକ କ୍ଲବ

ଅନେକ ସଂଗ୍ରାହକ ଏକାଠି ଗୃହୀ ହେବା ଜଣା କରିବାକୁ ଲେଖିଛନ୍ତି ଏବଂ ଅନେକେ ଏହି ସଙ୍ଘରେ ସଭ୍ୟ ହେବାକୁ ଯୋଗ୍ୟତା କଅଣ ପଚାରିଛନ୍ତି। କେତେକ ସଂଗ୍ରାହକଙ୍କ ମତାନୁଯାୟୀ ସଭ୍ୟଗୃହୀ ଗୃହଅଣାର ଡାକଟିକଟ ରଖାଗଲା। ଗୃହଅଣାର ଡାକଟିକଟ ପଠାଇ ସଭ୍ୟ ହେବାକୁ ହେବ। ଏଥିପାଇଁ କୌଣସି ଯୋଗ୍ୟତା ଦରକାର ନାହିଁ। ଯେ କୌଣସି ଲୋକ ଏଥିରେ ସଭ୍ୟ ହୋଇ ପାରିବେ। ସଭ୍ୟ ହେଲା ମାତ୍ରକେ ଗୋଟିଏ ସଂଗ୍ରହ ବହି ପ୍ରଥମେ ଖରିଦ କରିବାକୁ ପଡ଼ିବ। ସେଥିରେ ପ୍ରଥମେ ଡାକଟିକଟ ସଂଗ୍ରହ କଲେ ପରେ ଅଭିଜ୍ଞତା ହେଲା ପରେ ଭଲରୂପେ ସଂଗ୍ରହ କରିବାକୁ ଇଚ୍ଛା ହେବ। ପ୍ରଶ୍ନର ଉତ୍ତର ଆଉ ଅନ୍ୟାନ୍ୟ ବିବରଣୀ ଜାଣିବାକୁ ଚାହୁଁଥିବା ସଂଗ୍ରାହକଗଣ ରିପ୍ଲାଇକାର୍ଡ ଦେବାକୁ ବିଶେଷ ଅନୁରୋଧ।

## ସମ୍ବାଦ ଓ ସଙ୍କେତ

ଗତ ଅକ୍ଟୋବର ମାସରେ ୨୪ ତାରିଖ ଦିନ ମିଳିତ ଜାତିସଂଘ ଦିବସ ଉପଲକ୍ଷେ ଭାରତୀୟ ଡାକ ଓ ତାର ବିଭାଗ ଗୋଟିଏ ଦୁଇଅଣିଆ ଡାକଟିକଟ ପ୍ରକାଶ କରିଥିଲେ । ଡାକଟିକଟଟି ସବୁଜ ରଙ୍ଗରେ ମୁଦ୍ରିତ । ସେଥିରେ ଘୃଷ୍ଟଶ୍ରେଷ୍ଠ ପଦ୍ମର ଚିତ୍ର ଦିଆଯାଇଛି ।

× × × ×

ଯୁକ୍ତରାଷ୍ଟ୍ର ଆମେରିକାର ନିଉୟର୍କ ବିଶ୍ୱବିଦ୍ୟାଳୟରେ ଫିଲାଟେଲି ବିଷୟରେ ଗୋଟିଏ ବିଭାଗ ଖୋଲାଯିବ ବୋଲି ଜଣାଯାଇଛି । ସେହି ବିଭାଗ ଆସନ୍ତା ମାର୍ଚ୍ଚମାସରେ ଖୋଲିବ । ଏହି ବିଭାଗରେ ଡାକଟିକଟ ସମ୍ବନ୍ଧୀୟ ସବୁ ବିଷୟ ଶିକ୍ଷା ଦିଆଯିବ । ଡାକଟିକଟର ପୂର୍ବ ଇତିହାସ, ତାର ସଂଗ୍ରହ, ରକ୍ଷଣାବେକ୍ଷଣ, ଆଧୁନିକ ଜଗତରେ ତାର ସ୍ଥାନ ଇତ୍ୟାଦି ନାନା ବିଭାଗରେ ପୁଙ୍ଖାନୁପୁଙ୍ଖ ଶିକ୍ଷା ଦିଆଯିବ ।

—o—

## ପୃଥିବୀର ବୃହତ୍ତମ ଘଡ଼ି

ଶ୍ରୀ ବସନ୍ତକୁମାର ଦାଶ, ବି. ଏସ୍‌ସି

ଆଜି କାଲି ଷ୍ଟେଚ୍ୟୁ ଅଫ୍ ଲିବର୍ଟି (Statue of Liberty) ଅପେକ୍ଷା କୋଲ୍‌ଗେଟ ଘଡ଼ି (Colgate clock) ଆମେରିକାର ବେଶୀ ଦର୍ଶକଙ୍କୁ ଆକୃଷ୍ଟ କରେ । ଜର୍ସି ସହରରେ ଥିବା ଆମେରିକାନ କୋଲ୍‌ଗେଟ୍ କମ୍ପାନିଙ୍କର ବିରାଟ ଅଟ୍ଟାଳିକା ଉପରେ ଏହି ଘଡ଼ିଟି ଅବସ୍ଥିତ । ଏହାର ଆକାର ଏତେ ବଡ଼ ଯେ ନିଉୟର୍କ ପୋତାଶ୍ରୟରୁ ମଧ୍ୟ ଏହା ଦେଖାଯାଏ ।

ଅଷ୍ଟଭୁଜାକାର ଏହି ବିରାଟ ଘଡ଼ିଟିର ସର୍ବ ବୃହତ୍ ବ୍ୟାସ ୫୦ଫୁଟ୍ । ତାହାର ଡାଏଲର କ୍ଷେତ୍ରଫଳ ୧୯୬୩ ବର୍ଗ ଫୁଟ । ଏହାର ଡାଏଲଟି ଏନାମେଲ ଦିଆ ଇସ୍ପାତ୍ ଫଳକରେ ତିଆରି ।

ଏଥିରେ ପାଞ୍ଚ ମିନିଟ୍ ସୂଚକ ଯେଉଁ ବାରଟି ଚିହ୍ନ ରହିଛି ସେଥିରୁ ପ୍ରତ୍ୟେକର ଲମ୍ବ ୭ ଫୁଟ ଏବଂ ଓସାର ୨ଫୁଟ ୫ଇଞ୍ଚ । ରାତିରେ ଦିଶିବା ପାଇଁ ଏହି ଚିହ୍ନ ଗୁଡ଼ିକ ପାଖରେ ନିଅନ୍ ନଳୀ ଖଞ୍ଜା ଯାଇଛି । ଏହି ପ୍ରତ୍ୟେକ ନଳୀର ପରିମିତି ୯୦ଫୁଟ ।

ଏହାର ମିନିଟ କଣ୍ଟାର ଲମ୍ବ ୨୯ଫୁଟ ୩ଇଞ୍ଚ ଏବଂ ଓସାର ପ୍ରାୟ ୮ଫୁଟ । ଏହାର ଓଜନ ୨୨୦୦ ପାଉଣ୍ଡ । ଘଣ୍ଟା କଣ୍ଟାଟିର ଲମ୍ବ ୧୯ଫୁଟ ୮ଇଞ୍ଚ ଏବଂ ଓସାର ପ୍ରାୟ ୮ଫୁଟ ଏବଂ ଓଜନ ୧୭୨୫ ପାଉଣ୍ଡ । ପିଅଶାଳ କାଠର ବଡ ବଡ ଚକ୍ଲା ଯୋଡ଼ି ଏହି କଣ୍ଟା ତିଆରି କରା ଯାଇଛି । ଘଣ୍ଟା କଣ୍ଟା ଓ ମିନିଟ କଣ୍ଟା ଦୁଇଟିର ଓଜନ ମିଶି ୩୯୨୫ ପାଉଣ୍ଡ ବା ପ୍ରାୟ ଦୁଇ ଟନ୍ ! ଯେଉଁ ଦଣ୍ଡ ବା ହବ୍ (hub) ଉପରେ ଏହି କଣ୍ଟା ଦୁଇଟି ଅବସ୍ଥିତ ତାର ଓଜନ ୫୦୦ପାଉଣ୍ଡ ଏବଂ ବ୍ୟାସାର୍ଦ୍ଧ ୩ଫୁଟ ୬ଇଞ୍ଚ ।

ନିମ୍ନଲିଖିତ ବିଷୟରୁ ଘଡ଼ିଟିର ବିଶାଳତା ସମ୍ବନ୍ଧରେ ଅନୁମାନ କରାଯାଇ ପାରେ । ଏହାର ମିନିଟ୍ କଣ୍ଟାର ଅଗ୍ର ଭାଗକୁ ପ୍ରତି ମିନିଟରେ ୩୧ଇଞ୍ଚ ଗତି କରିବାକୁ ପଡ଼େ । ୨୪ଘଣ୍ଟା ମଧ୍ୟରେ ଏହା ପ୍ରାୟ ୫ ମାଇଲ ପରିକ୍ରମଣ କରେ । ଏହି ଘଡ଼ିର ଦୋଳକ ବା ପେଣ୍ଡୁଲମର ଓଜନ ୨୩୦ ପାଉଣ୍ଡ (୩ ମହଣରୁ ଅଧିକ) ଏବଂ ଲମ୍ବ ୮ଫୁଟ ।

ଘଡ଼ିଟିକୁ ଆଲୋକିତ କରିବା ପାଇଁ ୩୫୦ ଟି ବିଜୁଳି-ବତୀ ଖଞ୍ଜା ଯାଇଛି । ଏହି ବତୀଗୁଡ଼ିକରେ ପ୍ରତ୍ୟହ ୪୩୨୦ ଓ୍ୱାଟ୍ ବିଜୁଳି ଶକ୍ତି ଖର୍ଚ୍ଚ ହୁଏ ।

ଘଡ଼ିଟି ଚାଲିବା ପାଇଁ ଏକ ଇଲେକ୍‌ଟ୍ରିକ୍ ମୋଟରରୁ ଶକ୍ତି ନେଇ ଥାଏ । ଏହି ମୋଟର ପାଇଁ ୬୮ ଟି ଉଚ୍ଚ ଶକ୍ତି ସମ୍ପନ୍ନ ବେଟାରୀ ଦରକାର । ହଠାତ୍ ବିଜୁଳି ଶକ୍ତି ବନ୍ଦ ହୋଇଗଲେ ମଧ୍ୟ ଘଡ଼ିଟି ଅକ୍ଲେଶରେ ୪ଦିନ ପର୍ଯ୍ୟନ୍ତ ଚାଲି ପାରିବ ।

ଘଡ଼ିଟିର ଡାଏଲ୍, ଘଣ୍ଟାକଣ୍ଟା ଏବଂ ମିନିଟ୍ କଣ୍ଟା ଗୁଡ଼ିକୁ ସଫା କରିବାକୁ ପ୍ରତ୍ୟହ ଦୁଇଜଣ ଲୋକ ଦରକାର । ଘଡ଼ିର କୌଣସି ଅଂଶକୁ ପରୀକ୍ଷା କରିବାକୁ ହେଲେ ସିଡ଼ି ଦରକାର ହେବ ।

କୋଲଗେଟ୍ କମ୍ପାନିଙ୍କର ପ୍ରସିଦ୍ଧ ଇଂଜିନିଅର୍ ୱାରେନ୍ ଡେଭି ଏହି ଘଡ଼ିଟିକୁ ତିଆରି କରିଥିଲେ । ୧୯୨୪ ଡିସେମ୍ବର ୧ ତାରିଖରେ ଏହାର ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇଥିଲା ।

—o—

# ସେ ଯୁଗର ପାଚେରୀ ଏ ଯୁଗର ବିସ୍ମୟ

ଶ୍ରୀ ମୋହନ ମୁରାରି ବାରିକ

ସେତେବେଳକୁ ଯୀଶୁ ଜନ୍ମ ହୋଇ ନ ଥିଲେ। ତାଙ୍କ ଆଗରୁ ପ୍ରାୟ ଅଢ଼ାଇଶ' ବର୍ଷ! ଆଜକୁ ସେ ହେଲାଣି ପ୍ରାୟ ବାଇଶି ଶହ ବର୍ଷ ତଳର କଥା।

ଆମ ବାପଅଜା ହୋଇ ପ୍ରାୟ ପଚିଶ ପୁରୁଷ ତଳେ ଆମ ପଡ଼ୋଶୀ ରାଜ୍ୟ ଚୀନରେ ଗୋଟିଏ ପାଚେରୀ ତିଆରି ହୋଇଥିଲା। ତାକୁ ଏ ଯୁଗରେ ପ୍ରାଚୀନ କାଳର ସପ୍ତାଶ୍ଚର୍ଯ୍ୟରୁ ଗୋଟିଏ ବୋଲି ଗଣୁଛନ୍ତି।

ସେ ଯୁଗରେ ଆମେ ଆଉ ଏଇ ଚୈନିକମାନେ ପୃଥିବୀରେ ସବୁଠୁ ସଭ୍ୟ ଥିଲେ। ଆଜି ଯେଉଁ ଆମେରିକା ପରମାଣୁ ବୋମା ଗୋଟାଏ ହାତରେ ଧରି ଆର ହାତରେ ଶାନ୍ତିର ଅଳ କାଢ଼ୁଛି, ସେତେବେଳେ ତାର ସଭ୍ୟତାର ଗନ୍ଧ ନ ଥିଲା। ଇଉରୋପ ଅବସ୍ଥା ମଧ୍ୟ ସେଇପରି ଥିଲା।

ସେଇ ସମୟରେ— !

ଚୀନରେ ଜଣେ ଟାଣୁଆ ରାଜା ଥିଲେ। ତାଙ୍କ ନାଁ! "ଚୀନ୍ ସୁହୁଆଙ୍ଗ୍"! ତାଙ୍କର ବାହୁରେ ଯେତିକି ବଳ ଥିଲା—ମୁଣ୍ଡରେ ଥିଲା ସେତିକି ବୁଦ୍ଧି। ପାଖ ପଡ଼ଶାର ଯେତେ ଦେଶ ସମସ୍ତେ ତାଙ୍କରି ପାଖରେ ମୁଣ୍ଡ ନୁଆଇଁ ଥାଆନ୍ତି। ଏତେବଡ଼ ଚୀନ ସେତେବେଳକୁ କୌଣସି ରାଜାର ଅଧୀନରେ ନ ଥିଲା। ସାରା ଚୀନ ଆଉ ତାର ଅଡ଼ଶା ପଡ଼ଶା ତାଙ୍କର କଥାକୁ ଅନେଇ ବସିଥାଏ।

ଭାରତର ଉତ୍ତରରେ ହିମାଳୟ। ତାକୁ ଡେଇଁ ଆରପାଖରୁ ଶତ୍ରୁ ଆସି ପାରେନି। କିନ୍ତୁ ଚୀନ ଦେଶରେ ତା' ନାହିଁ। ତାର ସବୁଆଡ଼ ଏକରକମ ଖୋଲା। ବିଶେଷରେ ଉତ୍ତର ଏବଂ ପଶ୍ଚିମଟା ବିଲକୁଲ୍ ଫାଙ୍କା। ସେଇ ସୁଯୋଗ ନେଇ ଅନେକ ସମୟରେ ଶତ୍ରୁମାନେ ଚୀନାମାନଙ୍କୁ ଆକ୍ରମଣ କରୁଥିଲେ। ସେମାନଙ୍କ ଧନରତ୍ନ ବୋହିନେଇ ସେଇ ଯାଯାବରମାନେ ପୁଣି ଯେଉଁଆଡ଼ୁ ଆସୁଥିଲେ ସେଇ ଆଡ଼କୁ ପଳାଇ ଯାଉଥିଲେ।

ସମ୍ରାଟ୍ "ଚୀନ୍" ମନେ ମନେ ବଡ଼ ବ୍ୟସ୍ତ ହୋଇ ପଡ଼ିଲେ। ଯେତେ ଚେଷ୍ଟା କଲେ ବି ସେ ଏଇ ଶତ୍ରୁମାନଙ୍କୁ ଜବତ୍ କରି ପାରିଲେ ନି। ସବୁବେଳେ କେବଳ ଗୋଟିଏ ଚିନ୍ତା କଲେ—ଦେଶକୁ ନିରାପଦେ ରଖିବେ କିପରି? ଭାରତ କଥା ତାଙ୍କ ମନରେ ରେଖାପାତ କଲା। ଭାବିଲେ—ଈଶ୍ୱର ଭାରତକୁ କେଡ଼େ ନିରାପଦରେ ରଖିଛନ୍ତି! ଏଇପରି ଯଦି ଗୋଟାଏ କୃତ୍ରିମ ପାହାଡ଼ ସେ ଚୀନର ସେଇ ଖୋଲା ମାଟି ବୁକୁରେ ଠିଆ କରାଇ ପାରନ୍ତେ— ! ତେବେ— ! ତେବେ ଦେଖନ୍ତେ କମିଟିକା ସେଇ ଚୋର ସଇତାନ ଶତ୍ରୁମାନେ ତାଙ୍କର ପ୍ରଜାମାନଙ୍କୁ ହଇରାଣ କରନ୍ତେ।

ହେଲେ—ଏଡ଼େବଡ଼ ପାଚେରୀ କରି ପାରିବେ ତ! ମନକୁ ଟାଣ କଲେ—"ସମ୍ରାଟ ଚୀନ"।

ଠିକ୍ କଲେ—ଚୀନର ଉତ୍ତରରେ ନିଶ୍ଚୟ ଗୋଟାଏ ବଡ଼ ପାଚେରୀ ତିଆରି ହେବ। ଚୀନର ଏ ମୁଣ୍ଡରୁ ସେ ମୁଣ୍ଡଯାଏ ହେବ ତାର ବ୍ୟାପ୍ତି।

ବିଜୁଳି ଗତିରେ ଏ ଖବର ରାଜ୍ୟସାରା ମାଡ଼ିଗଲା। ସାରା ଚୀନ ଦେଶ ବାହାରି ପଡ଼ିଲା। ସମ୍ରାଟ୍ "ଚୀନ ସୁହୁଆଙ୍ଗ୍" ଙ୍କ ଆଦେଶକୁ ନ ମାନିବାକୁ ଧୁଆ କିଏ?

କାମ ଆରମ୍ଭ ହେଲା।

ଦିନରାତି— ! ରାତିଦିନ— ! ଏଇପରି ତିରିଶି ବର୍ଷରୁ ଅଧିକ କେତେ ବର୍ଷ ଚାଲିଗଲା। ଦେଶସାରା ଖଟିଖଟି ତିଆରି କଲେ ସେଇ ପାଚେରୀ।

ଦୁଇପାଖେ ପଚିଶଫୁଟ ଦୂରରେ ଦୁଇଧାଡ଼ି ଗାତ ଖୋଳାଯାଏ। ଗ୍ରାନାଇଟ୍ ଦେଇ ଏ ଦୁଇଧାଡ଼ି ଗାତ ଉପରେ ଠିଆ ହୁଏ ଦୁଇଧାଡ଼ି ଶକ୍ତ କାନ୍ଥ। ଏ କାନ୍ଥର ଉଚ୍ଚତା କୋଡ଼ିଏ ଫୁଟ। ତମ ଆମ ପରି ସାଢ଼େ ତିନୋଟିଙ୍କୁ ଠିଆ କଲେ ଏତିକି ଉଚ୍ଚ ହେବ କି ନା ସନ୍ଦେହ। ମଝିରେ ଫାଙ୍କ ଥାଏ। ସେଥିରେ ଦୁଇ ପାଖରୁ ମାଟି ପଥର ଆଣି ଭରି ଦିଆଯାଏ। ତା' ଉପରେ ପୁଣି ମଣିଷେ ଉଚ୍ଚର ପ୍ରାୟ ପାଞ୍ଚ ଫୁଟର ଗୋଟାଏ ଶକ୍ତ ଛାଉଣୀ। ଆଜି ବିଜ୍ଞାନ ବହୁତ ଆଗେଇ ଯାଇଛି ବୋଲି ପଶ୍ଚିମ ଦେଶର ରାଜନୀତିକ ବଡ଼ପଣ୍ଡାମାନେ ରଡ଼ି ଛାଡ଼ୁଛନ୍ତି। କିନ୍ତୁ ସେଇ ସବୁ ଦେଶର ବୈଜ୍ଞାନିକମାନଙ୍କୁ ପଚାରିଲେ ସେମାନେ ଉତ୍ତର ଦିଅନ୍ତି—ଏ ଯୁଗରେ ଏପରି ଏକ ପାଚେରୀ ତିଆରି କଲେ ଏହାଠାରୁ ବିଶେଷ ଅଧିକ କିଛି କରାଯାଇ ପାରନ୍ତା କି ନା ସନ୍ଦେହ।

"ସମ୍ରାଟ୍ ଚୀନ୍ ସୁହୁଆଙ୍ଗ୍" ବଡ଼ ଯୁଦ୍ଧପ୍ରିୟ ଥିଲେ। ତାଙ୍କ ଅଧୀନରେ ସବୁବେଳେ ତିନିଲକ୍ଷ ସୈନ୍ୟ ମହଜୁଦ୍ ଥାଆନ୍ତି। ସେ ଯୁଗଯାଏ ଏତେବଡ଼ ବିରାଟ ସୈନ୍ୟ ଫଉଜ ରଖିଥିବା ରାଜା ପୃଥିବୀ ଇତିହାସରେ ନାହାନ୍ତି। ରାଜାଙ୍କ ଆଦେଶରେ ଏଇ ସୈନ୍ୟମାନେ ମାଇଲ ମାଇଲ କରି

ଜାଗା ବାଣ୍ଟି ନେଇଥିଲେ । ସେମାନଙ୍କ ଉପରେ କାମ ତଦାରଖିବା ଏବଂ ଲୋକଙ୍କୁ କାମରେ ସାହାଯ୍ୟ କରିବା ଭାର ଥାଏ । ଏମାନେ ସାଧାରଣତଃ ମାଟି ଖୋଳିବା କାମରେ ଲାଗିଥିଲେ ।

ଏଇ ପାଚେରୀ ସମ୍ବନ୍ଧରେ ଇଂଲଣ୍ଡରେ ଜଣେ ଲେଖକ ଏକ ବିଚିତ୍ର କଥା ଲେଖିଥିଲେ । ସେ ଦେଶର ଏକ ସାପ୍ତାହିକ କାଗଜରେ ବାହାରିଥିଲା ଯେ— ଏଥିପାଇଁ ହଜାର ହଜାର ଲୋକ ଜୀବନ ବଳି ଦେଇଛନ୍ତି । ଲୋକମାନଙ୍କୁ ବାଧ କରି କାମ କରାଯାଉଥିଲା । ଗୈର ତାକୁ ଆଦି ଯେଉଁମାନେ ଜେଲ ଭୋଗୁଥିଲେ ସେମାନଙ୍କୁ ଶୃଙ୍ଖଳ ଦେଇ କାମ କରା ହେଉଥିଲା । ଏ କାଗଜ ଅନୁସାର ମତ ଦିଅନ୍ତି ଯେ ଯେଉଁମାନେ ରୋଗରେ ପଡୁଥିଲେ, ଯେଉଁମାନେ କାମ କରିବାକୁ ଅକ୍ଷମ ହେଉଥିଲେ ବା ଯେଉଁମାନେ କାମପାଇଁ ଅନିଚ୍ଛୁକ ହେଉଥିଲେ ସେମାନଙ୍କୁ ମାଟି ସହ ଲୁଅଡ଼େ ସେଇ ପାଚେରୀ ଭିତରେ ଫିଙ୍ଗାଇ ଦିଆ ଯାଉଥିଲା । ସେମାନଙ୍କ ଉପରେ ମାଟି ଚଲାଇ ଜୀବନ୍ତ ସମାଧି ଦିଆ ହେଉଥିଲା । ଅବଶ୍ୟ ଏ କଥାରେ କେତେ ଦୂର ସତ ଅଛି ସେ କଥା ଯେଉଁମାନେ ପୃଥିବୀ ଇତିହାସ ଗବେଷଣା କରୁଛନ୍ତି ସେମାନେ କହିବେ ।

ଅଟକଳ କହେ—ତିରିଶ ବର୍ଷରୁ ଅଧିକ ସମୟ ଏହି ପାଚେରୀକୁ ତିଆରି କରିବାରେ ଲାଗିଗଲା । ଅବଶ୍ୟ ଯାହାର ଫଳରେ ଚୀନର ଲୋକେ ଅନ୍ତତଃ ପଚିଶ ପୁରୁଷ ଯାଏ ନିରାପଦ ହୋଇଥିଲେ ! ଶାନ୍ତିର ନିଃଶ୍ୱାସ ମାରି ନିଜର ପୂର୍ବପୁରୁଷଙ୍କୁ ପ୍ରଣତି ଜଣାଇଥିଲେ—କୃତଜ୍ଞତାରେ । ପ୍ରାୟ ପନ୍ଦରଟି ଶତାବ୍ଦୀ ଧରି ଚୀନକୁ ଶତ୍ରୁମାନେ କେବଳ ଏହି କୃତ୍ରିମ ପାହାଡ଼ ଯୋଗୁଁ ଆକ୍ରମଣ କରି ପାରି ନ ଥିଲେ ।

ଏଇ ପାଚେରୀ ଲମ୍ବରେ ୧,୧୪୫ ମାଇଲ । ପ୍ରାୟ ଭାରତୀୟ ହିମାଳୟର ଦୈର୍ଘ୍ୟ ସହ ସମାନ । ଏହାକୁ ଭାଙ୍ଗି ବର୍ତ୍ତମାନ ଆଠଫୁଟ ଉଚ୍ଚ ଏବଂ ତିନିଫୁଟ ଓସାର କରିଦିଅ । ଦେଖିବ-ଏହା ସାରା ପୃଥିବୀକୁ ଗୋଟାଏ ବେଢ଼ରେ ବୁଲି ଆସିବ । ଆମେ ସେତେବେଳେ ଭାବିବା—ଏ କ'ଣ ଦ୍ୱିତୀୟ ଶନିଗ୍ରହ ? କାରଣ ଶନିଗ୍ରହରେ ଏଇ ପରି ଗୋଟିଏ ବଳୟ ନାହିଁକି ? ଏ ଗଳ୍ପ ଗାଣିତିକମାନଙ୍କ ମତ ।

ଜ୍ୟୋତିର୍ବୈଜ୍ଞାନିକମାନେ ଏ ବିଷୟରେ କ'ଣ କହନ୍ତି ?

ସେମାନେ ଅନୁସାର ଏକ ବିଚିତ୍ର ମତ ଦିଅନ୍ତି । ସେମାନଙ୍କ ମତରେ ଆମେ ଚନ୍ଦ୍ରଗ୍ରହକୁ ଗଲେ— ମଣିଷ ତିଆରି କେବଳ ଯେଉଁ ଗୋଟିଏ ଜିନିଷ ଦେଖାଯିବ— ତାହା ହେଉଛି—ଏଇ ପାଚେରୀ !

ଆଉ— ?

ଏଇ ପାଚେରୀଟି ତିଆରି ହୋଇଥିଲା—ପ୍ରାୟ ବାଇଶି ଶହ ବର୍ଷ ତଳେ— ! ଆମରି ପଢ଼ଶାଘରର ସେ ଯୁଗର ଯେଉଁ ପାଚେରୀ ତିଆରି କରିଥିଲା ଏ ଯୁଗର ତାହା ବିସ୍ମୟ !

—୦—




# ଦାର୍ଶନିକ ରସେଲ

ଶ୍ରୀ ରାମହରି ମିଶ୍ର

ଦେଶ, କାଳ, ପାତ୍ର ବନ୍ଧନ ଲଙ୍ଘନ କରି ଯେଉଁଦିନଠାରୁ ନୋବେଲ ପୁରସ୍କାର ପ୍ରତିଷ୍ଠିତ ହୋଇ ବିଶ୍ୱସାହିତ୍ୟ ପୁଷ୍ଟ କରି ଆସିଲାଣି, ସେହି ଦିନଠାରୁ ଆମ୍ଭେମାନେ ପୃଥିବୀର ଶ୍ରେଷ୍ଠ ସାହିତ୍ୟିକ ଓ ସେମାନଙ୍କର ସାହିତ୍ୟର ସନ୍ଧାନ ପାଇ ଆସୁଅଛୁ ।

ବିଂଶ ଶତାବ୍ଦୀରେ ଶ୍ରେଷ୍ଠ ସାହିତ୍ୟସେବୀ ହିସାବରେ ଯେଉଁମାନଙ୍କୁ ଏହି 'ନୋବେଲ ଲରେଟ୍' ପଦବୀରେ ଭୂଷିତ କରାଯାଇଛି ଏବଂ ଯାହାଙ୍କ ନାମ ବ୍ୟତୀତ ଶତାବ୍ଦୀର ଶ୍ରେଷ୍ଠ ସାହିତ୍ୟରଥୀମାନଙ୍କ ଇତିହାସ ଅପୂର୍ଣ୍ଣ ରହିଯିବ ସେ ହେଉଛନ୍ତି ବିଲାତର ୮୬ ବର୍ଷର ଯୁବକ (?) ବର୍ଟାଣ୍ଡ ଅର୍ଥର ଉଇଲିୟମ ଆର୍ଲ ର୍ସୁଲ ରସେଲ । ଏକାଧାରରେ ଦାର୍ଶନିକ, ଗାଣିତିକ, ଶିକ୍ଷାବିତ୍ ତଥା ସାହିତ୍ୟିକ ହିସାବରେ ଆମେ ତାଙ୍କୁ ୧୯୩୧ ମସିହାରୁ ଭଲଭାବରେ ଜାଣି ଆସୁଅଛୁ । ସେ ବର୍ତ୍ତମାନ ଯୁବକସୁଲଭ ସମସ୍ତ ଗୁଣର ଅଧିକାରୀ । ଗତ ୧୯୫୨ ଡିସେମ୍ବରରେ ସେ ୪ର୍ଥଥର ପାଇଁ ବିବାହ କରିଛନ୍ତି । ଅମ୍ଳାନବଦନ । ସବୁବେଳେ ହସ ହସ ମୁଖରେ କାର୍ଯ୍ୟରତ ଥିବାର ତାଙ୍କୁ ସମସ୍ତେ ଦେଖନ୍ତି । ସେ ତାଙ୍କ ଜୀବନରେ ସମ୍ମାନ ପାଇଛନ୍ତି । ନିର୍ଯ୍ୟାତିତ ଓ ଅପମାନିତ ମଧ୍ୟ ହୋଇଛନ୍ତି ।

ଏପରିକି ସାଢେ ଚ୍ଛରମାସ ପର୍ଯ୍ୟନ୍ତ ତାଙ୍କୁ ଜେଲଦଣ୍ଡ ମଧ୍ୟ ଭୋଗିବାକୁ ପଡ଼ିଛି । କିନ୍ତୁ ସେ ଓ ତାଙ୍କ ମତ ଅଟଳ । ପରିସ୍ଥିତି ତାଙ୍କୁ ଘୁଞ୍ଚାଇ ପାରିନାହିଁ । ବରଂ ପରିସ୍ଥିତି ଘୁଞ୍ଚି ଯାଇଛି । ଥରେ ଜଣେ ବନ୍ଧୁ ତାଙ୍କୁ ତାଙ୍କ ଜେଲ ଜୀବନର ଅନୁଭୂତି ବର୍ଣ୍ଣନା କରିବାକୁ ଅନୁରୋଧ କଲେ । ରସେଲ ବିନାଦ୍ୱିଧାରେ କହିଲେ "ସେ ସମସ୍ତକ ମୋର ଅତି ଆନନ୍ଦରେ କଟି ଯାଇଥିଲା । ସେ ସମସ୍ତ ମଧ୍ୟରେ ମୋର ସାଧର ଅଜ୍ଞାତ ପରି ପ୍ରତ୍ୟେ ମାନ ହେଉଥିବା କାର୍ଯ୍ୟକ୍ରମ ମୁଁ ସୁଚାରୁରୂପେ ନିର୍ବାହ କରିଥିଲି । ବନ୍ଦୀ ଜୀବନ କି ଚମତ୍କାର ! ସେଠି ଦୈନନ୍ଦିନ ଶହ ଶହ ଟେଲିଫୋନ ଶୁଣିବାକୁ ହୁଏ ନାହିଁ । ଶହ ଶହ ଚିଠି ଲେଖିବାକୁ ନ ଥାଏ । ପ୍ରଥମ ଶ୍ରେଣୀ ବନ୍ଦୀ ହିସାବରେ ଚଉକି, ବହିପତ୍ର ମୋତେ ସବୁ ଯୋଗାଇ ଦିଆ ହୋଇଥିଲା । ମୋ ଜୀବନରେ କାମ କରିବାର ଏପରି ସୁଯୋଗ ମୁଁ କେବେ ପାଇ ନଥିଲି ।

ଅଭିଯୁକ୍ତ ଆସାମୀଙ୍କ ପାଇଁ ଯାହା ଦଣ୍ଡରୂପେ ବିବେଚିତ, ତାହା ଏହି ଅସାଧାରଣ ମାନବ ପକ୍ଷରେ କର୍ମର ପ୍ରେରଣା । ଠିକ ଚୁମ୍ବକର ଦୁଇଟି ମେରୁର ସମ୍ପର୍କ ପରି ।

ପ୍ରଥମ ଶ୍ରେଣୀ ବନ୍ଦୀ ହିସାବରେ ତାଙ୍କୁ କିଛି ଘର ଭଡ଼ା ଦେବାକୁ ହୁଏ । ଥରେ ରସେଲ୍ ଜେଲ ସୁପରିଣ୍ଟେଣ୍ଡେଣ୍ଟଙ୍କୁ ପଚାରିଲେ, "ଏ ଭଡ଼ା ନ ଦେଲେ ଆଉ କେଉଁ ଦଣ୍ଡଭୋଗିବାକୁ ହେବ ?" ସୁପରିଣ୍ଟେଣ୍ଡେଣ୍ଟ ଏକଥା ଶୁଣି ବହୁ କଷ୍ଟରେ ତାଙ୍କ ହସ ସମ୍ବରଣ କରି ପାରିଥିଲେ ।

ଜଣେ ବନ୍ଧୁ ରସେଲଙ୍କ ପାଇଁ କିଛି କାନାରି (ଅଳ୍ପ ନିଶା ହେବାଭଳି) ମଦର ବନ୍ଦୋବସ୍ତ କରିବା ପାଇଁ ଜେଲ କର୍ତ୍ତୃପକ୍ଷଙ୍କୁ କହିଗଲେ । ଜେଲ ଅଫିସର ରସେଲଙ୍କୁ ପଚାରିଲେ "ଆପଣ ପରା କାନାରି (ଅର୍ଥ ଶ୍ରେଷ୍ଠ ପକ୍ଷୀବିଶେଷ ମଧ୍ୟ ହୁଏ) ଚାହୁଁଛନ୍ତି ?" ରସେଲ କହିଲେ "ନା, ମୁଁ ଗୋଟିଏ ଓ୍ୱେଗଟେଲ୍ ଦରକାର କରୁଛି ।" (ବିଗଟେଲାପ୍ଲ ମାଙ୍କଡ଼) ।

ରାଜନୀତିରେ ମଧ୍ୟ ଥରେ ଅଧେ ପଶିବାକୁ ରସେଲ୍ ଛାଡ଼ି ନାହାନ୍ତି । ସ୍ତ୍ରୀଙ୍କ ଅନୁରୋଧରେ ସେ ଥରେ ସ୍ତ୍ରୀମାନଙ୍କୁ ଭୋଟ କ୍ଷମତା ଦିଆଯିବା ପ୍ରସ୍ତାବ ଉପରେ ଗୋଟିଏ ମହିଳା ନିର୍ବାଚନ ମଣ୍ଡଳୀରୁ ନିର୍ବାଚନ ଲଢ଼ୁଥିଲେ । ଗୋଟିଏ ମହିଳା ସଭାରେ ଭାଷଣ ଦେଉଛନ୍ତି—ତାଙ୍କର ଜଣେ ବିରୋଧୀ ଦଳର ବନ୍ଧୁ ଗୋଟିଏ ଥଳୀରେ ଗୋଟିଏ ମୂଷା ଆଣି ସ୍ତ୍ରୀମାନେ ବସିଥିବା ସ୍ଥାନରେ ଛାଡ଼ି ଦେଲେ । ସ୍ତ୍ରୀମାନେ ଚିତ୍କାର କରି ଉଠିଲେ ଓ ଯେ ଯାହା ଚଉକି ଉପରକୁ ଉଠି-ଗଲେ । ବିରୋଧୀ ବନ୍ଧୁମାନେ କହିବାକୁ ସୁଯୋଗ ପାଇ ଚାରିଆଡ଼େ ଘୋଷଣା କଲେ ଯେ ଯେଉଁମାନେ ମୂଷାଟାକୁ ଏପରି ଭୟ କରୁଛନ୍ତି ସେମାନଙ୍କୁ ଭୋଟକ୍ଷମତା ଦେବା କେଡ଼େ ବୋକାମି ନ ହେବ ! ରସେଲ ନିର୍ବାଚନରେ ହାରିଗଲେ । ସେ ଆଉ ତାଙ୍କ ଜୀବନରେ କେବେ ନିର୍ବାଚନରେ ପ୍ରତିଦ୍ୱନ୍ଦିତା କରି ନାହାନ୍ତି ।

ଜୀବନରେ ରସେଲ ଯେତେ ଲୋକଙ୍କୁ ଭେଟିଛନ୍ତି ସେମାନଙ୍କ ମଧ୍ୟରେ ସେ ଲେନିନ୍‌ଙ୍କୁ ଭେଟିଥିବା ତାଙ୍କର ବେଶି ମନେ ଅଛି ବୋଲି କହନ୍ତି । ପ୍ରଥମେ ଲେନିନ୍ ଖୁବ୍ ମେଳାପି ପରି ତାଙ୍କୁ ଦେଖାଯାଉଥିଲେ । ରସେଲ୍ ଖୁବ ଆମୋଦ ପ୍ରମୋଦ ମଧ୍ୟରେ ତାଙ୍କ କଥାରେ ପ୍ରଥମେ ପ୍ରଥମେ ସମ୍ମତି ଜଣାଉଥିଲେ । ଇତ୍ୟବସରେ ଲେନିନ୍ କହିଲେ ଯେ ସେ ଗରିବ ଚାଷୀମାନଙ୍କୁ ଧନୀ ଜମିଦାରମାନଙ୍କ ବିପକ୍ଷରେ କିପରି ଉତ୍ତେଜିତ କରିଥିଲେ ଓ ପରେ ଗରିବ ଚାଷୀମାନେ କିପରି ଗୋଟି ଗୋଟି କରି ଧନୀଚାଷୀଙ୍କୁ ଗଛରେ ଝୁଲାଇ ଫାଶୀ ଦେଇପରି କରିଥିଲେ । ଏହା କହି ଲେନିନ୍ ହସିଲେ ଓ ରସେଲ୍ ବାଧ୍ୟ ହୋଇ ସେଠି ହସିଥିଲେ । ତାଙ୍କ ମତରେ ପୃଥିବୀ ବକ୍ଷରୁ ମଣିଷ ବିଦାୟ ନେବା ବରଂ ଶ୍ରେୟସ୍କର କିନ୍ତୁ ସାମ୍ୟବାଦ ପରି ପଶୁବୃତ୍ତିକୁ ଆଚରିବା ଉଚିତ ନୁହେଁ ।

ଦୁନିଆରେ ଯେ କୌଣସି ବୁଦ୍ଧିଜୀବୀ ତାଙ୍କ ମତ ସହିତ ଏକ ମତ ନହେଉ ପଛକେ, ତାଙ୍କ ଦାର୍ଶନିକ ତତ୍ତ୍ୱକୁ ପସନ୍ଦ ନ କରୁ ପଛେ, ତାର ଅସ୍ତିତ୍ୱକୁ ଅସ୍ୱୀକାର କରିପାରିବ ନାହିଁ—ଏହା ନିଃସନ୍ଦେହ ।

# ଶିକ୍ଷାଧାରାରେ ପରିବର୍ତ୍ତନ

ଗତ ଜାନୁୟାରୀ ୨୫ ତାରିଖରେ ପାଟନାଠାରେ ଆଲିଗଡ଼ ବିଶ୍ୱବିଦ୍ୟାଳୟର କୁଳପତି ଡକ୍ଟର ଜାକିର ହୋସେନଙ୍କ ସଭାପତିତ୍ୱରେ ଆନ୍ତଃ-ବିଶ୍ୱବିଦ୍ୟାଳୟ ବୋର୍ଡର ଏକ ବୈଠକ ବସିଥିଲା । ଏହି ସଭା ସେକେଣ୍ଡାରୀ ଏଡୁକେସନ କମିସନଙ୍କ ପ୍ରସ୍ତାବକୁ ସମର୍ଥନ କରି ସ୍ପଷ୍ଟ କଲେ ଯେ ଭାରତର ଭବିଷ୍ୟତ ଶିକ୍ଷାଧାରାରେ ନିମ୍ନଲିଖିତ ପରିବର୍ତ୍ତନ କରାଯିବ ।

ସେକେଣ୍ଡାରୀ ସ୍କୁଲ ପାଠର ସ୍ତର ଆଉ ଟିକିଏ ବଢ଼ାଇ ଦିଆଯିବ ଏବଂ ୧୭ ବର୍ଷ ବୟସ ବେଳକୁ ପିଲା ସେଠାରୁ ଉତ୍ତୀର୍ଣ୍ଣ ହୋଇ ଡିଗ୍ରୀ ଶ୍ରେଣୀକୁ ଯିବ । ସେଠାରେ ୩ ବର୍ଷ ପଢ଼ି ସେ ବି.ଏ. ପରୀକ୍ଷା ଦେବ ।

ଏହି ପରିବର୍ତ୍ତନ ଏକା ବର୍ଷକେ ସାଧିତ ହୋଇ ପାରିବ ନାହିଁ । ନୂତନ ପ୍ରଣାଳୀରେ ସେକେଣ୍ଡାରୀ ସ୍କୁଲ ଗଠିତ ହେଲେ ଅଧିକ ଉପକରଣ ଓ ଯୋଗ୍ୟତର ଶିକ୍ଷକ ଆବଶ୍ୟକ ହେବେ । ଏ ସବୁ ଯେତେ ଶୀଘ୍ର ସମ୍ଭବ କରି-ଯିବାର ଚେଷ୍ଟା କରାଗଲେ ସୁଦ୍ଧା ପ୍ରଥମେ କେତେ ବର୍ଷ ପର୍ଯ୍ୟନ୍ତ ବର୍ତ୍ତମାନର ହାଇସ୍କୁଲ ଓ ପୁନର୍ଗଠିତ ଉଚ୍ଚସ୍ତରର ସେକେଣ୍ଡାରୀ ସ୍କୁଲ ପାଖ ପାଖ ହୋଇ ଚାଲିଥିବ । ନୂତନ ପ୍ରବର୍ତ୍ତିତ ପ୍ରଣାଳୀ ପୂରାପୂରି କାର୍ଯ୍ୟକାରୀ ହେବାଯାଏ ଏହି ମଧ୍ୟବର୍ତ୍ତୀ କାଳରେ ହାଇସ୍କୁଲ ଶିକ୍ଷା ଶେଷ କରି ଯେଉଁମାନେ ଉଚ୍ଚ ଶିକ୍ଷା ପାଇବାକୁ ଇଚ୍ଛୁକ ହେବେ, ସେମାନେ ହାୟର ସେକେଣ୍ଡାରୀ ସ୍କୁଲରେ ଅଥବା କୌଣସି କଲେଜରେ କିଛି ଦିନ ପ୍ରାକ୍-ବିଶ୍ୱବିଦ୍ୟାଳୟ ଶିକ୍ଷା ଲାଭ କରିସାରି ୩ ବର୍ଷିଆ ପୂର୍ଣ୍ଣାଙ୍ଗ ଡିଗ୍ରୀ ପାଠ ଅଧ୍ୟୟନ କରିବେ । କମିଟି ମତ ଦେଇଛନ୍ତି ଯେ ୧୯୬୧ ମସିହା ବେଳକୁ ଏହି ନୂତନ ପ୍ରଣାଳୀ ପୂରାଭାବରେ ପ୍ରବର୍ତ୍ତିତ ହୋଇ ସାରିଥିବ ।

କେତେକ ବିଶ୍ୱବିଦ୍ୟାଳୟ ପରୀକ୍ଷାସ୍ୱରୂପ ୧୯୫୬-୫୭ ବର୍ଷଠାରୁ ଏହି ପ୍ରଣାଳୀ ପ୍ରବର୍ତ୍ତନ କରନ୍ତୁ ବୋଲି କମିସନ୍ ସୁପାରିସ କରିଛନ୍ତି । ସେମାନେ ଗୋଟିଏ ବର୍ଷ ପ୍ରାରମ୍ଭିକ ଶିକ୍ଷା ଦେଇ ୧୯୫୭-୫୮ଠାରୁ ପିଲାମାନଙ୍କୁ ୩ ବର୍ଷିଆ ଡିଗ୍ରୀ ଶ୍ରେଣୀରେ ଭର୍ତ୍ତି କରନ୍ତୁ ବୋଲି କମିସନ ପ୍ରସ୍ତାବ ଦେଇଛନ୍ତି । ଯେଉଁମାନେ ହାୟର ସେକେଣ୍ଡାରୀ ସ୍କୁଲରୁ ଉତ୍ତୀର୍ଣ୍ଣ ହୋଇ ଯିବେ, ସେମାନଙ୍କୁ ୧୯୫୮-୫୯ରେ ୩ ବର୍ଷିଆ ବି.ଏ. ଶ୍ରେଣୀର ପ୍ରଥମ ବାର୍ଷିକ ଶ୍ରେଣୀରେ ଭର୍ତ୍ତି ହେବାପାଇଁ ବ୍ୟବସ୍ଥା ରଖିବାକୁ ବିଶ୍ୱବିଦ୍ୟାଳୟମାନଙ୍କୁ କୁହାଯାଇଛି ।

—○—

# ଦୋକାନୀ-ମନ୍ତ୍ରୀ

ଶ୍ରୀ ନଦୀୟାବିହାରୀ ମହାନ୍ତି

ମଣିଷ ଗହଳି ରାସ୍ତାକଡ଼ରେ
ମନ୍ତ୍ରୀ-ଦୋକାନ ସାଜେ ;
ରିକ୍ସା ମଟର ସାଇକେଲ ଘଣ୍ଟି,
ଅହରହ ଯହିଁ ବାଜେ ।
ନୁହେଁ ସେ ମନ୍ତ୍ରୀ, ଶାସନ କରେନ,
ଆସନ ଲୋଡ଼ଇ ନାହିଁ,
ରାଜନୀତିର ସେ ଧା'ର ଧାରେନ
ଦୋକାନ-ନୀତିରେ ବାଇ ।
କହେ ନାହିଁ କେବେ ବଡ଼ ବଡ଼ କଥା,
ଯୋଜନା କରେନ ଠୁଳ !!
ନୁହେଁ ସେ ମନ୍ତ୍ରୀ ଶାସନ କଳର
ବ୍ୟବସାୟ ତାର ମୂଳ ।
ମୂଲିଆ ମାଲିକ ସଭିଙ୍କ ମିତ୍ର
ମନ୍ତ୍ରୀ ଦୋକାନୀ ସେ ଯେ;
ବୟସ ଗଲାଣି ତିରିଶରୁ ଟପି
ଅଛି ସେ ଯୁବକ ତେଜେ ।
ଖବର କାଗଜ ମୂଲ୍ୟ ବୁଝେନ,
ନ ବୁଝେ ଗୀତାର ବାଣୀ;
ବିଦ୍ୟାବିହୀନ, ରାଜନୀତି ଅବା
କାହିଁ ସେ ପାରିବ ଜାଣି !!
ଦର୍ଶନ ତାର, 'ଈଶ୍ୱର ଏକ,
ଧନ ବୃଦ୍ଧି କରେ ସେଇ,'
ଖଟିଲେ ଖାଇବ, ହଟିଲେ ମରିବ
ଲକ୍ଷ୍ମୀ ରହିବେ ନାହିଁ ।
ଏଇ ସେ ମନ୍ତ୍ରୀ, ଦୋକାନୀ-ମନ୍ତ୍ରୀ
ଗରିବ ମନ୍ତ୍ରୀ ସେ ଯେ,
ପିଚ୍ ରାସ୍ତାର ବଡ଼ ବଜାରେ
ଦୋକାନ ଯାହାର ରାଜେ ।
ନୁହେଁ ସେ ମନ୍ତ୍ରୀ ଶାସନ କରେନ,
ରାଜ୍ୟ ଚଳାଏ ନାହିଁ,
ଦୋକାନୀ-ମନ୍ତ୍ରୀ, ଗରାଖ ତୋଷଇ
ଖୋରାକ ଗଣ୍ଡାକ ପାଇଁ ।

—○—

# ପିଲାଙ୍କ ପ୍ରକୋଷ୍ଠ

## ଶଙ୍ଖ-କୋଇଲି

ଶ୍ରୀ ମୋହନ ମୁରାର ବାରକ

—ପୂର୍ବ ପ୍ରକାଶିତ ପରେ—

ଗୃଲିଛି କୋଇଲି । ଛି' ହନର ବାଟ ତ ! ଏଇ ଡାକଦେଲେ ଶୁଭିବ । କାହିଁକି ଏତେ ତରତର ? ଦଉଡ଼ ଦଉଡ଼ ଲାଭଟା ବା' କ'ଣ ? ଗୃର ପାଖରେ ଏତେ ଯେ ଆନନ୍ଦ ଛଟପଟ ହୋଇ ମୋତେ ଡାକୁଚନ୍ତି ସେମାନଙ୍କ ଡାକଟା କ'ଣ ଏତେ ମୂଲ୍ୟହୀନ ?

ଦୁଇ ପାଖେ ତାର ଶହ ଶହ ଗଛ ଲତା । ଅଗନା ଅଗନ ବଣ । ଶୋଇ ଘୁଙ୍ଗୁଡ଼ି ମାରୁଚ । ମୁଣ୍ଡ ଉପରକୁ ଟେକି ପାହାଡ଼ ଠିଆ ହୋଇ ରହିଚ । ଆଖିରେ ତାର ପ୍ରଶ୍ନବାଚୀ-"ମୋ'ଠୁ ଆଉ କଏ ଉଚ୍ଚ ?"

କେଉଁଠି ଲମ୍ବି ଯାଇଚ···ବଲର ରେଖା । ଦୁର ଚହବାଲ ଯାଏ ଖାଲି ଫସଲ—ଫସଲ । ଗୃଷୀ ଗାଉଚ —ମନ ଫୁଲାଣିଆ ଗୀତ !

ସବୁଜ ପଡ଼ିଆ । ଛେଳି ଡାକୁଚ···ତା' ଛୁଆକୁ- ମେଁ···ମେଁ···ମେଁ···

"ତୋତେ ମୁଁ ପରି ଡାକ ମରୁଚ···କୁଆଡ଼େ ଗଲୁ ···ଏଁ !" ଛୁଆ ଦେଉଚ ଜବାବ-କଅଁଳ କଣ୍ଠରେ— "ମ୍ଁ ··· ମି ···ମି ···

"ଏଇପରିକା କଅଁଳ ଘାସ କେଉଁଠି ଆଉ ନାହିଁ !" ତା'ପରେ ଛୁଆ ଆସୁଚ ଦଉଡ଼ । ମାଆର ଚୀରରୁ ପିଉଚ କ୍ଷୀର ! ମେଣ୍ଢା କରୁଚ "ଭେ···ଭେ··· ଭେ··· ଏଇ ଆଗରେ ସାଥି ଯାଉଚ···ତା' ପଛେ ମୁଁ ଯାଏ !" ଗାଈ ତା' ଛୁଆକୁ ତାଗିଦ କର ଦେଉଛି—'ହମ୍ବା······।'

"ଆଗପଛ ବିଗୃରି କରି କାମ କରିବୁ ଏ ମା" ମଇଁଷି ତାକୁ ପ୍ରତିବାଦ ଜଣାଉଚ—ଅଇଁ···ଅଇଁ··· ଅଇଁ ।···

ଜୀବନ ତାର ଦୁଃଖେ ଯାଏ···ବଳ ତାର । ନାହିଁ ! ଶିଙ୍ଗକୁ ଶିଙ୍ଗ ଲଗାଇ ଲଢ଼େଇ କରୁଚ ମଇଁଷି । ମାଟି ଫାଟି ପଡ଼ୁଚ । ଦୂରରୁ ଦେଖି ଛେଳି, ମେଣ୍ଢା, ଗାଈ ପଳାଇ ଯାଉଛନ୍ତି···"ମେଁ ମେଁ···ଭେ···ଭେ···ହମ୍ବା ···ହମ୍ବା !" ସବୁ ମିଶି ଏକ ବିଚିତ୍ର ସ୍ୱର ସୃଷ୍ଟି ହେଉଚ । ଘୋଡ଼ା ଏ ସବୁ ଦେଖି ହସି ଉଠୁଚ···ହେଁ···ହେଁ···! ମିରିଗ ବିଚରା ଏସବୁ କାଣ୍ଡ ଦେଖି ପଳାଇ ଯାଉଛି— ଦୂରରୁ ଦୂରକୁ—ପବନ ଗତିରେ ସେ ଆଖିଆଗରୁ ଅଦୃଶ୍ୟ !

ଆକାଶରେ ଉଡ଼ ଉଡ଼ ଯାଉଚ ଚଢ଼େଇ । କେତେ ରଙ୍ଗ ! କେତେ ରକମ ମିଠା କଡ଼ା ସୁର ।

ପାଣିକୁଆ କହୁଚ "କଅ···କଅ···କଅ··· ପାଣି ଆସୁଚ···ପାଣି ଆସୁଚ···ଡକେଇକରି ରହ !"

"ଟେଁ···ଟେଁ ! ମୁଁ ମାଛ ଖାଇବି···ମୁଁ ମାଛ ଖାଇବି ।" ମାଛରଙ୍କା ଉପରେ ଉଡ଼ ଗୃଲିଚ । ପବନରେ ଚକପରି ଘୂରୁଚ ଗୋଟିଏ ମାଳ ଚଢ଼େଇ । ଡେଣା ପିଟି ପିଟି ସେ ଗଣୁଚ—କୋଇଲର କଳା ସୁଅ ତଳେ କେଉଁ ମାଛଛୁଆ ଖେଳୁଚ । ତଳକୁ ସେ ଖସୁଚ ତାରା (ଉଲ୍‌କାପିଣ୍ଡ) ଖସିଲା ପରି । ମାଛ ନେଇ ଛୁ । ମନ ଆନନ୍ଦରେ ପାଟିରେ ପକାଇ ଦେଉଚ । କେଡ଼େ ମିଠା ! ପାଣିଯମୁନା ତା' ନାଁ ।

ଲତା କୋଳରେ ମୁହଁ ଲୁଗୃଇଚ ଫୁଲ । "ମହୁ ଟୋପିଏ ଦେ" ! ଭ୍ରମର ଅଳି କରୁଚ—"ଉଁ—ହୁଁ ! ମୁଁ ଦେବିନି' ମହୁ !" ମନା କରି ଦେଉଚ ଫୁଲ । ପବନରେ ମୁଣ୍ଡ ହଲାଇ ଦେଉଚ ସେ । ପବନ ଫୁଲର ପରିଗଡ଼କ ବୋଲ ହେଉଚ—ଏଇ ତ ମୋର ସ୍ନୋ !

ଦୂର ଉଚ୍ଚ ପାହାଡ଼କୁ ସାଉଁଡ଼ ଧରିଚ ମେଘ । ବଣ ମାଳତୀର ବାସନା ଚହଟି ଆସୁଚ । ପବନର ବୁକୁ ଉପରେ ଶିହରଣର ଲହର !

ଗୃରି ପାଖରେ ଏତେ ବର୍ଣ୍ଣିଳ ରୂପ ! ଏତେ ମନ ଭୁଲାଣିଆ ଗୀତ ! ଏ ସବୁ କି ଭୁଲି ହୁଏ ? ଏ ସବୁକୁ କି ଅବହେଳା କରିଯାଇ ପାରେ ! ଯାଉ—ପଛେ ମୋର ବାଟ ଗୃଲିବା ନୋହୁଁ—! ପାଖ ପଡ଼ଶାରେ ଏତେଟା ଆନନ୍ଦଜନକ ଚଳ—ଏତେଟା ମରମଭୁଲା

·ଗୀତ··· ! ଯାକୁ ଥରେ ଛାଡ଼ିଲେ ଆଉ ସେ ମିଳିବନି ! ଯିବ ତ ଏତେ ତରତର କାହିଁକି ? କାଲ···କାଲ ···କାଲ ! କୋଇଲି ଗାଉଚି ଗୀତ ମନର ଆନନ୍ଦରେ ।

ଆଖି ଆଗରେ ଛ’ ମାସର ବାଟ । ଦିନକର ନୁହେ ଶହେ ଅଶୀ ଦିନର ! କପରି ସେ ଯିବ ? ବେଗେ ଯିବା ତାର ଦରକାର ! ଭଉଣୀ ତାର ଆସି କହିବ ଶଙ୍ଖଟା ଅଳସେଇ ! ଶଙ୍ଖ ମଠେଇ ! ନା-ନା-ତା’ ହୋଇ ପାରିବ ନ ! ଶଙ୍ଖ ଟାଣି କଲା ମନ ।

କଥାରେ ଅଛି—“ମନଟା ଯା’ର ଟାଣ, ତା’ର ଆଗେ ମୁଣ୍ଡ ନୁଆନ୍ତି ନିଜେ ଭଗବାନ !” ଶଙ୍ଖ ଗଳିଲା ଦଉଡ଼ ଦଉଡ଼ । ପଲାଶ ଫୁଲଟି ଲାଜ କରି କରି କହିଲା—“ଆଲୋ, ଶଙ୍ଖ ନାନୀ···, ମୋ’ ରୂପ ଭୁ ଦେଖିଯା’ ଥରେ ନଇଲେ ହେବୁ କାଣୀ !” ଶଙ୍ଖ କହିଲା—“ମରୁନୁ ଯାହା ! ରୂପଗରବିଣୀଟା ! ତୋ’ ରୂପର କି ମୂଲ୍ୟ ? ତୋତେ କିଏ ପଚାରେ ?” ବାଟରେ ଡେଙ୍ଗା ଡେଙ୍ଗା ମୋଟା ମୋଟା ଶାଳ ପିଆଶାଳ ଠିଆ ହୋଇଥିଲେ । ଶଙ୍ଖ ଯାଉଁ ଯାଉଁ ସେମାନଙ୍କ ସଙ୍ଗେ ଧକ୍କା ଖାଇଲା—“ମଡ଼···ମଡ଼ ···ମଡ଼···ଆମେ ଦେଖୁଛୁ···ଶଙ୍ଖଟା ଭୁ ଫାଜିଲ ତ ବଡ଼ !” “କ୍ଷମାକର ମୋତେ ! ମୁଁ ହେଲେ କରିବ କ’ଣ ? ମୋ’ ପାଖରେ ତମେ କାହିଁକି ଠିଆହେଲ ? ମୁଁ ପରା ଆଗକୁ ·ଯିବ ? ଆଗକୁ ଯିବାକୁ ହେଲେ ତୁମମାନଙ୍କୁ ତ ଡେଇଁବାକୁ ମୋତେ ପଡ଼ିବ ।”

କୁର୍ଦୁମୀ ଫୁଲଟି ପବନରେ ତାର ମହକ ବୁଣି ପକାଇଲା । ପାଖରେ ସୁନା କେରା ପରି ସୁନାସ୍ତି ଫୁଲ ଲମ୍ବିଚି । ତାକୁ ଡାକି ଡାକି କହିଲା—“ଦେଖୁଚୁ ସୁନା···ଶଙ୍ଖଟା କପରି ଯାଉଚି ଯେ··· ଆମ ଆଡ଼କୁ ଆଡ଼ ଆଖିରେ ବି ଅନାଉଁ ନ ! ମଲ୍ଲରେ ତୋର କାମ ! କାମ ତୋର ଖାଲି ପୋଡ଼ି ଯାଉଥିବ ।”

ଗିଲଶି ଫୁଲ ତାର ନାଲିକସ୍ତାଟି ପିନ୍ଧି ଆଗକୁ ଡେଇଁ ପଡ଼ିଲା— ! କହିଲା—“ଶଙ୍ଖ, ରହ ରହ !” ଶଙ୍ଖ ତାକୁ ଉସାଇ ନେଇ ଗଳିଲା ଆଗକୁ । “ବୁଝିଲୁ ଗିଲଶି, ଜୀବନରେ କାମ କରି ନ ପାରିଲେ—ପଛରେ କାନ୍ଦିବାକୁ ହୁଏ ! ଖାଲି ହସି ଖେଳି କଟାଇ ଦେଲେ କାଲି ଆସି ଦିନ ପାହିଯିବ । ସେଥିପାଇଁ ଧନ-ସମ୍ପତ୍ତି, ମାନ-ଅପମାନ, ଏ·ସବୁକୁ ଛାଡ଼ି ଦେବାକୁ ହେବ । ମଉଜ କରିବା । ମଜଲିସ କରିବା ! ତା’ପରେ ? ତା’ପରେ କ’ଣ କରିବା ? ସେଥିଲାଗି ମୁଁ ଯାଉଚି ଆଗକୁ । ଆଗକୁ ମୁଁ ନିଶ୍ଚୟ ଯିବି । ତମେ ମୋତେ ଯେତେ ଡାକିଲେ ମୁଁ ଶୁଣିବି ନ··· ମୁଁ ଶୁଣିବି ନ ! ଯିବାଟା ମୋର ଧର୍ମ !” ବରୁଣ ଗିଲଶି ଫୁଲଟି ଶଙ୍ଖଠୁ କପରି ରକ୍ଷା ପାଇବ ? ଆରେ, ବାପରେ ! କି ଶକ୍ତି ମ ଏ ଶଙ୍ଖଟାର ! ଏତେ ଶକ୍ତି ସେ କୋଉଠୁ ପାଇଲା ? ଏଇ ଆମରି ଆଗେ ଛୁଆ ! ଗିଲଶି ଫୁଲ ଖଣ୍ଡେ କୁଟା ଧରି ପାରି ହେଇ କୂଳରେ ଲାଗିଲା—ବଞ୍ଚିଲି··· ବଞ୍ଚିଲି··· !

କାଉଟିଏ ଉପରେ ଉଡ଼ି ଉଡ଼ି ଗଲା । ହଳଦୀ ବସନ୍ତ ଗଛ ଡାଳରେ ଗୁକ୍ରୁ-ଗୁକ୍ରୁ-କଲା । ବଗମାନେ ମାଛ ପାଇଁ ଅଳି କଲେ ।

ଅଜଗର କହିଲା—“ଦେଖିଲୁ ଶଙ୍ଖ ! ବାଟଟି ଟିକେ ଛାଡ଼ି ଦେ—ସେ ପାଖରେ ପରା କୁଚୁଟି ଛୁଆଟା ପଳାଇ ଯାଉଚି । ତାକୁ ମୁଁ ଖାଇବି । ଛାଡ଼ି ଦେ ବାଟ ଟା ।” ଶଙ୍ଖ ମନା କରି କହିଲା—“କାହାର କଥା ଶୁଣିବାକୁ ମୋର ଟିକିଏ ହେଲେ ତର ନାହିଁ । ଯାର ଇଚ୍ଛା ଯା’ କର !” ଅଜଗରଟା ଡେଇଁ ପଡ଼ିଲା । ମୁଣ୍ଡଟା ତାର ଖଣ୍ଡ ଖଣ୍ଡ ହୋଇ ଭାସିଗଲା ସୁଅରେ ! ଓଃ ! କ’ଣ ଏ ? ଗଛ ଲତା ମୁଣ୍ଡରେ ହାତ ଦେଲେ । ପଶୁପକ୍ଷୀ ଚୁପ୍ ଚୁପ୍ ହେଇ ରହିଗଲେ । କୋଟିଏ ବିଜୁଳିର ଚଞ୍ଚଳତା ତା’ ପାଦରେ—ଲକ୍ଷକୋଟି ବଜ୍ରର ଶକ୍ତି ତା’ ଟିକି ହୃଦରେ ! ସେ ଶଙ୍ଖ··· ! ସେ ଶଙ୍ଖ··· !

“ବାଟ ଦେବନି ଛାଡ଼···ମୁଁ ପଥର ଯାଉଚି ଗଡ଼ି !” କହି ଗୋଟାଏ ବଡ଼ ପଥର ସୁଅ ଭିତରକୁ ଗଡ଼ି ପଡ଼ିଲା । ତାକୁ ଉଡ଼ି ନେଲା ଶଙ୍ଖ । ଆଉ ଗୋଟାଏ ପଥର ସାଥିରେ ତୋ ବିନା ବାଡ଼େଇ ଦେଲା । ଗୋଟାଏ-ଦୁଇଟା-ଶହେ-ହଜାରେ-ଲକ୍ଷେ-କୋଟିଏ ! ଦେଖୁ ଦେଖୁ ଅଗଣନ ପଥର ତାର ପଥ ଓଗାଳିଲେ । ଯାକୁ ତା’ ଉପରେ—ତାକୁ ଯା’ ଉପରେ କଚୁଡ଼ିଲା

ଶଙ୍ଖ । ତାର ଘୁମ ମାଡ଼ ଖାଇ ଟିକି ଟିକି ହୋଇଗଲେ ସବୁ ।

ଗଛଲତା, ଫୁଲ-ଫଳ, ଜୀବ-ଜନ୍ତୁ, ପଶୁ-ପକ୍ଷୀ, ମାଟି-ପଥର, ବାଲି ଗୋଡ଼ ଯେ ଆଗରେ ପଡ଼ିଲା ସେ ଘସିଲା । ଶଙ୍ଖ ତାକୁ ଠେଲି ଠେଲି ନେଇ ଚାଲିଲା ଦୂରରୁ ଦୂରକୁ ।

ଆଗରେ ତାର ଠିଆ ହେବାକୁ କେହି ରହିଲେ ନା । ସମସ୍ତେ ଯେପରି ତା' ଉପରରେ ରୁଷିଆଁ । କା' ପାଟିରୁ ପଦଏ ହେଲେ କଥା ବାହାରିଲା ନା । ଡରିମରି ସମସ୍ତେ ତାକୁ ଛାଡ଼ ଦେଲେ ବାଟ ।

ଘୋ···ଘୋ···ଘୋ··· ! ବିଜୟର ଗୀତ ତାର ! ଯାଦୁର ସଂଗୀତ ଶଙ୍ଖର ! ଧାଇଁ ଧାଇଁ ଚାଲିଚି ଶଙ୍ଖ ଭଉଁରୀ ଖେଳି ଖେଳି !

ତାଜୁବ୍ ସମସ୍ତେ ! — ଚୁଲବ —

—o—




୧ । ଆମେରିକାର ବୋଷ୍ଟନ ବନ୍ଦର ନିକଟସ୍ଥ ଫୋର୍ଟ ଡାଓ୍ବେସରେ ଭୂମିତଳେ କେତେଗୁଡ଼ିଏ କୋଠରିରେ ଅନେକଗୁଡ଼ିଏ ବୈଦ୍ୟୁତିକ ଯନ୍ତ୍ରପାତି ରଖାଯାଇଛି । ଏହା ସମ୍ଭବତଃ ପୃଥିବୀର ସର୍ବପ୍ରଧାନ କାଲକୁନିକ ରବଟ୍ ।

ଏହି ବୈଦ୍ୟୁତିକ ଗୃହଗୁଡ଼ିକ ଭିଲ୍‌ସକନ ନାମରେ ଖ୍ୟାତ । ଏହା ୭୦ ମାଇଲ ଦୂରରେ ଥିବା ଉଡ଼ାଜାହାଜକୁ ଶଙ୍କିତ କରିପାରିବ ଏବଂ ସେ ବିମାନକୁ ୧ ଘଣ୍ଟାରେ ୧୨୦ ମାଇଲ୍ ବେଗରେ ଓଙ୍କାଇ ଦେଇ ପାରିବ ।

୨ । ଇଂଲଣ୍ଡରେ ନିଷ୍ଠୁର ପ୍ରକୃତିର ବିବାହିତ ଲୋକ ଯେଉଁମାନେ ତାଙ୍କର ସ୍ତ୍ରୀ ବା ସନ୍ତାନମାନଙ୍କ ପ୍ରତି ସର୍ବଦା ନିଷ୍ଠୁର ବ୍ୟବହାର କରିଥାନ୍ତି, ସେମାନଙ୍କ ନିମନ୍ତେ ଗୋଟିଏ ମାନସିକ ଗୃହର ବ୍ୟବସ୍ଥା କରାଯାଉଛି । ଏପରି ଲୋକମାନଙ୍କୁ ବାଧ୍ୟ କରି ସେମାନଙ୍କର ଉଦ୍ଧତ ପ୍ରକୃତି ବନ୍ଦ ହେବା ପର୍ଯ୍ୟନ୍ତ ସେଠାରେ ରଖାଯିବ । ମନସ୍ତତ୍ତ୍ୱବିତ୍‌ମାନେ ମତ ଦେଇଛନ୍ତି ଯେ ଏପରି କଲେ ବହୁତ ନରହତ୍ୟା, ଅତ୍ୟାଚାର ପ୍ରବୃତ୍ତି ବନ୍ଦ ହୋଇଯିବ ।

—o—

## ବୁଦ୍ଧି ପରୀକ୍ଷା

[ତୁମ ବୁଦ୍ଧିର ପ୍ରଖରତା ପରୀକ୍ଷା କରିବା ପାଇଁ ତଳେ କେତେଗୋଟି ପ୍ରଶ୍ନ ଦିଆଯାଇଛି । ସାଧାରଣ ବୁଦ୍ଧି-ସମ୍ପନ୍ନ ଲୋକ ସେଗୁଡ଼ିକ ୧୦ ମିନିଟ ଭିତରେ ଉତ୍ତର କରିବାର କଥା । ଚେଷ୍ଟା କରି ଦେଖ ।]

୧ । 'ସରସ' ଶବ୍ଦର ଆରମ୍ଭ ଓ ଶେଷ ଅକ୍ଷର ଏକ, ଅର୍ଥାତ୍ 'ସ' । ତଳେ ସେହିପରି କେତେ ଗୋଟି ଶବ୍ଦର ସଙ୍କେତ ଦିଆଯାଇଛି । ଶବ୍ଦ ଗୁଡ଼ିକୁ ପୂର୍ଣ୍ଣ କରି ଲେଖ ।

—ବୀ— ନୂଆ
—ଲ— ଔଷଧ ବିଶେଷ
—ହା— ପ୍ରଶଂସାସୂଚକ ଉକ୍ତି
—ର— ବ୍ୟଥା ବା ତ୍ରାସ
—ହ— ଏକ ପ୍ରକାର ଅଠାଳିଆ ପଦାର୍ଥ ।

୨ । (କ) ଗୋଟାଏ ଗଛରେ ବେଶୀ ଆମ୍ବ ଅଛି ନା ଗୋଟାଏ ଆମ୍ବରେ ବେଶୀ ଗଛ ଅଛି ?

ଖ) ଭିତରେ ବାସି, ଅଥଚ ବାହାରକୁ ସୁଗନ୍ଧଯୁକ୍ତ— ଏପରି କିଏ ?

ଗ) କେଉଁ ଲଟାଗଛର ଅଧେ ଆକାଶକୁ ଉଡ଼ିଯାଏ ?

୩ । ତଳଲିଖିତ ଶବ୍ଦମାନଙ୍କରେ କେଉଁ ଅକ୍ଷର ସବୁଠାରୁ ଅଧିକଥର ବ୍ୟବହୃତ ହୋଇଛି ?

ବଂଶୀଧର, ଧର୍ମ, ଧୀବର, ମଶା ।

୪ । ଗୋବିନ୍ଦ ପ୍ରଥମେ କିଛିଦୂର ପୂର୍ବକୁ ଯାଇ ତା ପରେ ବାମ ଦିଗକୁ ଗଲା । କିଛିବାଟ ଯାଇ ପୁଣି ଡାହାଣକୁ ଗଲା । ପୁଣି ଅଳ୍ପକ୍ଷଣପରେ ପଛକୁ ଫେରିଆସିଲା । ସେ ବର୍ତ୍ତମାନ କେଉଁ ଦିଗକୁ ମୁହଁ କରିଛି ?

୫ । ବଂଶୀ ଯଦି ତା ଆମ୍ବରୁ ୧୮ଟି ରତନକୁ ଦିଏ, ତେବେ ରତନର ଆମ୍ବ ବଂଶୀ ଆମ୍ବର ଦୁଇଗୁଣ ହୋଇଯିବ କିନ୍ତୁ ରତନ ଯଦି ତା ଆମ୍ବରୁ ୧୮ଟି ଗୋପାଳକୁ ଦିଏ, ତେବେ ଗୋପାଳର ଆମ୍ବ ରତନ ଆମ୍ବର ଦୁଇଗୁଣ ହୋଇଯିବ । ଗୋପାଳ ଯଦି ତା ଆମ୍ବରୁ ୧୮ଟି ବଂଶୀକୁ ଦିଏ, ତେବେ ସେ ଦୁହିଁଙ୍କ ଆମ୍ବ ସମାନ ହୋଇଯିବ ।

ତେବେ ହିସାବ କରି କହିଲ, କାହା ପାଖରେ କେତୋଟି ଆମ୍ବ ଅଛି ?

( ଉତ୍ତର ୩୨ ପୃଷ୍ଠାରେ ଦେଖନ୍ତୁ )

# ବାୟୁ ଲହରୀ

ଲେ—ବାୟୁ

ମାର୍ଶାଲ୍ ଟିଟୋ ମହୀଶୂରରେ ଏକ ସଭାରେ ତାଙ୍କର ଭାରତ ବିଷୟରେ କି ଧାରଣା ହୋଇଛି ବର୍ଣ୍ଣନା କରିବାକୁ ଯାଇ କହିଲେ "ତୁମ ଦେଶ ଗୋଟାଏ ପ୍ରକାଣ୍ଡ କାରଖାନାରେ ପରିଣତ ହୋଇଛି।"

ମାର୍ଶାଲ ଟିଟୋ ଯଦି ୫୦ ବର୍ଷତଳେ ଭାରତ ବୁଲି ଆସିଥାନ୍ତେ ତେବେ ଆମ ଦେଶକୁ ଆଉ ଏକ ରକମ ଦେଖିଥାନ୍ତେ। ସେ ବୋଧହୁଏ କହିଥାନ୍ତେ 'ପ୍ରକାଣ୍ଡ ଗୁହାଳ' ବା 'ପ୍ରକାଣ୍ଡ ଭୂତଖାନା'; ନିର୍ବାଚନ ସମୟରେ ଆସିଥିଲେ କହିଥାନ୍ତେ 'ପ୍ରକାଣ୍ଡ ପାଗଳଖାନା'। ତେବେ ସେ ଯେଉଁ 'ଖାନା' ହେଉ ପଛେ, ଗୋଟାଏ 'ପ୍ରକାଣ୍ଡ-ଖାନା' ନିଶ୍ଚୟ, ଏ କଥା ସମସ୍ତେ ସ୍ୱୀକାର କରିବେ।

*

ଆଉ ଜଣେ ବ୍ରିଟିଶ ବୈଜ୍ଞାନିକ ପ୍ରଫେସର ହାଲଡେନ୍ ଲୁଆଡ଼େ ତାଙ୍କ ଦେଶ ଛାଡ଼ି ଭାରତରେ ପିଲାମାଇପ ଘେନି ଘରଦ୍ୱାର କରି ସ୍ଥାୟୀ ବାସିନ୍ଦା ହୋଇ ରହିବାକୁ ଇଚ୍ଛା ପ୍ରକାଶ କରିଛନ୍ତି। ସେ କହିଛନ୍ତି, "ଭାରତରେ ରହିଲେ ଗୋଟାଏ ଖୁବ୍ ସଭ୍ୟ ସମାଜ ମଧ୍ୟରେ ବାସ କଲାପରି ନିଶ୍ଚିତ ଧାରଣା ହୁଏ।"

ସାହେବ କିଛି ନୂଆ କଥା କହି ନାହାନ୍ତି, ଭାରତର ସଭ୍ୟତା ବହୁ ପ୍ରାଚୀନ। କେବଳ ଗଲା ଦୁଇଶହ ତିନିଶହ ବର୍ଷଭିତରେ ପଶ୍ଚିମ ଜଗତର ସଂସ୍ପର୍ଶରେ ଆସିବା ଫଳରେ କେତେକ ଅସଭ୍ୟତା ଏ ଲୋକଙ୍କ ଭିତରେ ପଶି ଯାଇଛି।

*

ଆମେରିକା ସରକାର ପୁଣି ଥରେ ନେଭାଡ଼ାଠାରେ ଫେବ୍ରୁଆରୀ ୩ୟ ସପ୍ତାହରେ ପରମାଣୁ ବୋମା ଫୁଟାଇ ପରୀକ୍ଷା କରିବେ ବୋଲି କହିଲେଣି। ଗଲାଥର ସେହିପରି ହାଇଡ୍ରୋଜେନ ବୋମା ପରୀକ୍ଷା କରି ଶହଶହ ମାଇଲ ସମୁଦ୍ର ପାଣି ବିଷାକ୍ତ କରି ଦେଇଥିଲେ ଓ କେତେକ ଜାପାନୀ କେଉଟଙ୍କ ଜୀବନ ମାଟି କରି ଦେଇଥିଲେ। ବୋମା ପରୀକ୍ଷା ଆଉ ଏହିପରି କିଛିଦିନ ଚାଲିଲେ ପୃଥିବୀର ଜଳବାୟୁ ବିଷାକ୍ତ ହୋଇ ମନୁଷ୍ୟବଂଶ ଲୋପପାଇବ—ବୋମାର ପ୍ରକୃତ ପ୍ରୟୋଗ ଆଉ ଆବଶ୍ୟକ ପଡ଼ିବ ନାହିଁ।

*

କରାଚୀରେ ପାକିସ୍ଥାନ ସରକାରଙ୍କ କଣ୍ଟ୍ରୋଲ୍ ଆଦେଶ ଜାରି ହେବା ପରଠାରୁ ବଜାରରୁ ଅଣ୍ଡା କୁଆଡ଼େ ଉଭେଇ ଗଲାଣି। ଅଣ୍ଡା କିଣିବାପାଇଁ ଲୋକେ ଖାଲି ଅଣ୍ଡାଳି ହେଉଛନ୍ତି। ଟିକେଟ ଘର ପାଖରେ ଯେପରି ଧାଡ଼ିକରି ଲୋକେ ଅପେକ୍ଷା କରିଥାନ୍ତି, ଅଣ୍ଡା ଦୋକାନ ଆଗରେ ସେହିପରି ଦୃଶ୍ୟ ଦେଖିବାକୁ ମିଳୁଛି। ଅଣ୍ଡା ବେପାରରେ କଳାପୋତେଇ ଚାଲିଛି—ସରକାର ରୋକି ପାରୁ ନାହାନ୍ତି। କୁକୁଡ଼ାଙ୍କ ଉପରେ କଣ୍ଟ୍ରୋଲ୍ ଜାରି କଲେ ତ ମୂଳରୁ ଅନର୍ଥ ଯାଆନ୍ତା।

*

ରୁଷିଆରୁ ଆସିଥିବା ଫୁଟବଲ ଟୀମ ବର୍ତ୍ତମାନ ଭାରତରେ ଖେଳୁଛନ୍ତି। ସେମାନେ ଭାରତଗସ୍ତ ପରେ ସିଂହଳ ଯିବାପାଇଁ ସେଠାର ଫୁଟବଲ୍ ଆସୋସିଏସନଠାରୁ ଆମନ୍ତ୍ରଣ ପାଇଥିଲେ; ମାତ୍ର ସିଂହଳ ସରକାର ସେମାନଙ୍କୁ ସେଠାକୁ ଯିବାକୁ ମନା କରି ଦେଇଛନ୍ତି ଏବଂ ଭାରତସରକାରଙ୍କୁ କହିଛନ୍ତି, "ହୁସିଆର, ତାଙ୍କୁ ଏଠିକି ଛାଡ଼ିବ ନାହିଁ।"

କମ୍ୟୁନିଷ୍ଟ ଖେଳାଳୀଙ୍କ ଗୋଡ଼ ବାଜି ବାଜି ଫୁଟବଲ ଭିତର ପବନ କାଳେ କମ୍ୟୁନିଜ୍ମ ଗନ୍ଧରେ ଦୂଷିତ ହୋଇଯିବ! ସେ ପବନ ତ ପୁଣି ଅନ୍ୟ ପବନ ସଙ୍ଗେ ମିଶି ନିଶ୍ୱାସ ବାଟେ ମନୁଷ୍ୟର ପେଟ ଭିତରେ ପଶିବ। ତେବେ ସର୍ବନାଶ!

*

ସମ୍ବଲପୁର ମ୍ୟୁନିସିପାଲିଟି ସଙ୍ଗେ ସେଠା ବିଜୁଳି କମ୍ପାନୀଙ୍କର କଣ ଝଗଡ଼ା ଲାଗିବା ଫଳରେ ସମ୍ବଲପୁର ସହର ରାସ୍ତାରୁ ବିଜୁଳି ଆଲୁଅ ଉଠି କିରାସିନି ଦୀପ ଜଳୁଛି। ପୁଣି ହୁଏତ କିରାସିନି କମ୍ପାନୀ ସଙ୍ଗେ ଝଗଡ଼ା ଲାଗିଗଲେ ପୁଲଙ୍ଗ ଦୀପ ଜଳିବ ଏବଂ ଶେଷରେ ସହର ତମାମ ଅନ୍ଧକାର ହୋଇଯିବ। ତା ଫଳରେ ଖର୍ଚ୍ଚ କମିବ ଓ ଲୋକମାନେ ଏ ବିଜ୍ଞାନଯୁଗର ବିକୃତିରୁ ଆଦିମ ଯୁଗର ଶାନ୍ତିମୟ ପ୍ରକୃତି କୋଳକୁ ଫେରିଯାଇ ସୁଖରେ ରାତ୍ରି ଯାପନ କରିବେ। ଏହି ଆଦର୍ଶ ଲାଭ କରିବା ପାଇଁ ଏତେ ସୂକ୍ଷ୍ମ ଉପାୟ ଥାଉଁ ଥାଉଁ ଗାନ୍ଧି ମହାତ୍ମା ତୁଚ୍ଛାଟାରେ ଅହିଂସାବାଟ ଧରି ଧନ୍ଦି ହେଉଥିଲେ କିନା!

*

# ଚେଷ୍ଟାକଲେ ପାରିବ

ଶ୍ରୀ ନବ ପଟ୍ଟନାୟକ

## ନଖପଚ୍ଛ ( Nail polish )

ନଖ ରଙ୍ଗ କରିବାର ସଉକ ଆମ ଦେଶରେ ବହୁଦିନରୁ ଚଳି ଆସୁଛି । ଝିଅ ବୋହୂମାନେ ହରଗଉରୀ, ମଞ୍ଜୁଆତି ଇତ୍ୟାଦି ପତ୍ର ବାଟି ନଖ ଉପରେ ବୋଳି ରଖନ୍ତି । ଏ ସବୁ ଜିନିଷର ଗୋଟାଏ କସ ନଖକୁ ରଙ୍ଗ କରି ପକାଏ । ନଖର ବର୍ଣ୍ଣ ସେତେ ସୁନ୍ଦର ନ ହେଲେ ସୁଦ୍ଧା ଅନ୍ୟ ଉପାୟ ନ ଥିଲା । କିନ୍ତୁ ଆଜିକାଲି ଭାରି ସୁନ୍ଦର ଗୋଲାପି ରଙ୍ଗର ନଖପଚ୍ଛ ବାହାରି ପଡ଼ିଛି । ଆଜି ସେଇ ରଙ୍ଗ ତିଆରି କରିବାର ସୂକ୍ଷ୍ମ ଉପାୟଟି ଦିଆଗଲା । ପିଲାମାନେ ଚେଷ୍ଟା କଲେ ନିଜେ ତିଆରି କରି ପାରିବେ ।

ଫଟୋ ଫିଲ୍‌ମ ବା ସିଲୋଲଏଡ଼କୁ ଛୋଟ ଛୋଟ କରି କାଟ । ବାଇସ୍କୋପ ଫିଲ୍‌ମ ବା ଯେ କୌଣସି ଫଟୋ ଫିଲମ୍ ହେଲେ ସୋଡ଼ା କିମ୍ବା ସାବୁନ ପାଣିରେ ସିଝାଇ ସିନ୍ଧିରେ ଥିବା କଳା ଜିନଷଟିକୁ ଛଡ଼ାଇ ନିଅ । ସିଝାଇ ସାରି ଭଲକରି ଧୋଇଦେଲେ ପରିଷ୍କାର ହୋଇଯିବ । Amylacetate ମାପ ଅନୁଯାୟୀ ଗୋଟିଏ ଶିଶିରେ ରଖ ଏବଂ ଏହି ସିଲୋଲଏଡ଼ ଖଣ୍ଡକୁ ସେଥିରେ ଭିଜାଅ । ମଝିରେ ମଝିରେ ଶିଶିଟିକୁ ହଲାଇ ଦେଉଥାଅ । କେତେ ଘଣ୍ଟା ପରେ ସିଲୋଲଏଡ଼ସବୁ ପାଣି ହୋଇଯିବ । ସେଥିରେ Acetone ମିଶାଅ ଏବଂ ଯେଉଁ ପ୍ରକାର ରଙ୍ଗର ଆବଶ୍ୟକ ସେହି ରଙ୍ଗ ମିଶାଅ । ଏଇ ହେଲା ନଖପଚ୍ଛ । Amylacetateର ଗନ୍ଧ ଠିକ୍ ଚମ୍ପା କଦଳୀପରି । କଦଳୀ ଅର୍କ ହିସାବରେ ଏହା ମଧ୍ୟ ସରବତ ଇତ୍ୟାଦିରେ ବ୍ୟବହାର କରାଯାଇ ପାରେ ।

ସିଲୋଲଏଡ଼ ( Celluloid or waste photo film )—୪
ଆମିଲ ଆସିଟେଟ୍ ( Amylacetate ) ୪୦
ଆସିଟୋନ୍ ( Acetone )— ୪୦

ଇଓସିନ୍ (Eosin for Rosy colour or any aniline Dye) ଆବଶ୍ୟକ ଅନୁସାରେ । ଇଓସିନ୍ ବଦଳରେ ଯେ କୌଣସି ଗୋଲାପି ରଙ୍ଗ (Dyes) ବା ନାଲି ରଙ୍ଗ ( Dry pigment ) ବ୍ୟବହାର କରାଯାଇ ପାରେ ।

---

ବୌଦ୍ଧ ଶାସ୍ତ୍ରରେ ଲେଖାଅଛି ଯେ ବୁଦ୍ଧଦେବ ଯେତେବେଳେ କୁଶୀନଗରରେ ୨୫୦୦ ବର୍ଷ ତଳେ ଦେହ ତ୍ୟାଗ କଲେ, ତାଙ୍କ ଶରୀର ଭସ୍ମରୁ କେତେ ଖଣ୍ଡ ଅସ୍ଥି ଓ ୪ଟି ମାତ୍ର ଦାନ୍ତ ଅବଶିଷ୍ଟ ଥିବାର ଦେଖାଗଲା । ୪ଟି ଦାନ୍ତରୁ ଗୋଟିଏ ଦାନ୍ତ ସ୍ୱର୍ଗକୁ ଉଡ଼ିଗଲା, ଆଉ ଗୋଟିଏ ସିଂହଳ ଦାନ୍ତ ମନ୍ଦିର (କାଣ୍ଡି) ରେ ରକ୍ଷିତ ହେଲା । ତୃତୀୟଟି ତକ୍ଷଶିଳା ଓ ଚତୁର୍ଥଟି ନାଗପୁରୀରେ ରହିଲା । ବୁଦ୍ଧଙ୍କର ଭକ୍ତମାନେ ନାଗପୁରୀକୁ ନାଗପୁର ଅନୁମାନ କରି ଏହି ଚତୁର୍ଥ ଦାନ୍ତଟିକୁ ଠାବ କରିବା ପାଇଁ ଏକ ବ୍ୟାପକ ଅନୁସନ୍ଧାନ ଚଳାଇବା ମନସ୍ଥ କରିଛନ୍ତି ।

ଠାକୁରେ କରନ୍ତୁ ସେମାନଙ୍କ ଶ୍ରମ ସଫଳ ହେଉ । ମହାପୁରୁଷଙ୍କ ହଜିଲା ଦାନ୍ତଟି ମିଳୁ, କିନ୍ତୁ ଏଣିକି ମହାପୁରୁଷମାନଙ୍କ ମୃତ୍ୟୁପୂର୍ବରୁ ସେମାନଙ୍କ ଦାନ୍ତଗୁଡ଼ିକୁ ଭାଙ୍ଗି ରଖିଲେ ଭକ୍ତମାନଙ୍କୁ ଏତେ ହଟହଟା ହେବାକୁ ପଡ଼ିବ ନାହିଁ ।

—o—

---

## ଅଦୃଶ୍ୟକାଳି ( Invisible Ink )

ନାଲି, ନେଳି, କଳା, ଇତ୍ୟାଦି ନାନା ରଙ୍ଗର କାଳି ଅଛି କିନ୍ତୁ ଅଦୃଶ୍ୟ କାଳି ଏ ସବୁଠାରୁ ପୃଥକ । ଏହା କେବଳ 'ଗୋପନ କଥା' ଯାହାକି ସାଧାରଣଙ୍କର ଦେଖିବା ଅନୁଚିତ ସେହି ସବୁ ଲେଖା ଉଦ୍ଦେଶ୍ୟରେ ବ୍ୟବହାର କରାଯାଏ । ଏହାଛଡ଼ା ଏଥିରେ ମଧ୍ୟ ଗୋଟିଏ କୌତୁକ ଥାଏ । ପିଲାମାନେ ଏହାକୁ ତିଆରି କରି ଯେତିକି ଆନନ୍ଦ ଅନୁଭବ କରନ୍ତି ପରସ୍ପର ମଧ୍ୟରେ ଦେଖାଇ ସେତିକି ବାହାଦୁରୀ ମଧ୍ୟ ନିଅନ୍ତି । ସାଧାରଣ କାଳି ଯେପରି ନାନା ରଙ୍ଗର, ଅଦୃଶ୍ୟକାଳି ମଧ୍ୟ ସେପରି ନାନା ରଙ୍ଗର । ନିମ୍ନରେ କେତୋଟି ପରୀକ୍ଷିତ ଫର୍ମୁଲା ଦିଆଗଲା ।

ନାଲି—

ଫେନଲ୍ ଅପଥାଲିନ୍ (Phenolphthalein)—୧୫ ଗ୍ରେନ୍
ମେଥିଲେଟେଡ଼ ସ୍ପିରିଟ(methylated spirit)—୧ଡ୍ରାମ
ପାଣି— ୧ ଆଉନ୍‌ସ
ବାବୁଲ୍ ଅଠା (Gum acacia)— ୩୦ ଗ୍ରେନ୍

ପ୍ରଥମେ ସ୍ପିରିଟରେ ଫେନଲ୍‌ଅପ୍‌ଥାଲିନ ମିଶାଅ । ପରେ ଅନ୍ୟାନ୍ୟ । ଏହା ହେଲା କାଳି । କଲମ ଦ୍ୱାରା ଲେଖ । କିଛି ଦେଖାଯିବ ନାହିଁ । ଯେ କୌଣସି ଆମୋନିଆ ମିଶ୍ରିତ ଔଷଧ (Spirit ammon aromate, ammon carb, Liquor ammon acetatis ଇତ୍ୟାଦି) ବା ଆମୋନିଆ ପାଣିରେ (Ammonia hydroxide) କାଗଜ ଖଣ୍ଡେ ବୁଡ଼ାଇଦେଲେ ସଙ୍ଗେ-ସଙ୍ଗେ ସୁନ୍ଦର ଗୋଲାପୀ ରଙ୍ଗର ପରିଷ୍କାର ଅକ୍ଷର ଦେଖାଯିବ । ନିଶାଦଳକୁ ପାଣିରେ ଗୋଳାଇ ପରୀକ୍ଷା କରାଯାଇ ପାରେ ।

ନୀଳ—

ଅରାରୁଟ୍ (any starch) ପାଣିରେ ଗୋଳାଇ ପତଳା କରି ସରୁ କଲମ ଦ୍ୱାରା କାଗଜରେ ଲେଖି ଶୁଖାଇ ଦିଅ । ଦରକାର ବେଳେ କାଗଜ ଖଣ୍ଡେ ଓଦା କରି ଆଇଓଡ଼ିନ (Iodine) ବୋତଲ ଠିପି ଖୋଲି ଦେଖାଇ ଦେଲେ ବେଶ୍ ନୀଳବର୍ଣ୍ଣର ଅକ୍ଷର ଦେଖାଯିବ ।

ଶାଗୁଆ—

କୋବାଲ୍ଟ କ୍ଲୋରାଇଡ଼ (Cobalt chloride)— ୪୦ ଗ୍ରେନ୍

ବାବୁଲ ଅଠା (Gum acacia)—୧୦ ଗ୍ରେନ୍

ପାଣି (Distilled water)—୧ ଆଉନ୍ସ

କୌଣସି ଧାତୁ ନିର୍ମିତ କଲମରେ ନ ଲେଖି ପରକଲମରେ ଲେଖି ଶୁଖାଇ ଦିଅ । କାଗଜ ଖଣ୍ଡ ଗରମ କରିବାମାତ୍ରେ ଅକ୍ଷରଗୁଡ଼ିକ ପରିଷ୍କାର ଦେଖାଯିବ ।

କଳା—

ସୁଗାର ଅଫ୍ ଲେଡ଼ (Sugar of lead) ପାଣିରେ ଗୋଳି ଲେଖ । Sulphuretted hydrogen ଶିଶି ଉପରେ ଦେଖାଇଲେ ଗାଢ଼ କଳାରଙ୍ଗର ଅକ୍ଷର ଦେଖାଯିବ ।

ଖାଇବା ଲୁଣକୁ ପାଣିରେ ଗୋଳି କାଗଜରେ ଲେଖି ଶୁଖାଅ । ପରେ କାଗଜ ଓଦା କଲେ ଅକ୍ଷର ଦେଖାଯିବ ।

(କୌଣସି ଜିନିଷ ନ ମିଳିଲେ ଆର୍ଯ୍ୟକଳାନିଳୟ, ପୋ: ଚୁଡ଼ଙ୍ଗ, ପୁରୀ ସଙ୍ଗେ ପରାମର୍ଶ କରନ୍ତୁ । ଚିଠି ପତ୍ରର ଉତ୍ତର ଆବଶ୍ୟକ ହେଲେ **ରିପ୍ଲାଇ କାର୍ଡ** ବ୍ୟବହାର କରିବାକୁ ଅନୁରୋଧ ।)

—o—

# ଖେଳ-କୌତୁକ

୧ । ଜାତୀୟ ଟେନିସ୍ ଫାଇନାଲ ଖେଳରେ ଅଷ୍ଟ୍ରେଲିଆର ଜାକ୍ ଆର୍ଲିନ୍‌ଘ୍ଲିଲ ଭାରତୀୟ ରାମନାଥନ କ୍ରିଷ୍ଣନଙ୍କୁ ପରାଜିତ କରି ଚାମ୍ପିଅନସିପ୍ ପାଇଲେ ।

ସ୍ତ୍ରୀ ବିଭାଗରେ ମଧ୍ୟ ମିସ୍ ରୀତା ଡେଭର୍ ତାଙ୍କର ପ୍ରତିଦ୍ୱନ୍ଦୀ ମିସ୍ ଊର୍ମିଳା ଥାପରଙ୍କୁ ପରାସ୍ତ କରି ବିଜୟୀ ହୋଇଛନ୍ତି ।

୨ । ଜାତୀୟ ବ୍ୟାଡ୍‌ମିଣ୍ଟନ ପ୍ରତିଯୋଗିତାରେ ବମ୍ବେର ନାନ୍ଦୁ ନାଟେକାର ଉତ୍ତର ପ୍ରଦେଶର ଦିଲୀପ ନାଥ ସେଠଙ୍କୁ ପରାଜିତ କରି ଚାମ୍ପିଅନ ହୋଇଛନ୍ତି ।

ସ୍ତ୍ରୀ ବିଭାଗରେ ମଧ୍ୟ ବମ୍ବେର ମିସ୍ ପଟବର୍ଦ୍ଧନ ଜୟଯୁକ୍ତ ହୋଇଛନ୍ତି ।

୩ । ଅଲିଗଡ଼ଠାରେ ହୋଇଥିବା ଆନ୍ତଃ ବିଶ୍ୱ-ବିଦ୍ୟାଳୟ କ୍ରିକେଟ ଖେଳରେ ପଞ୍ଜାବ, ଦିଲ୍ଲୀ ଓ ମହୀଶୂର ଯଥାକ୍ରମେ ୧ମ, ୨ୟ ଓ ୩ୟ ହୋଇଛନ୍ତି । ପଞ୍ଜାବ ଭିକ୍ଟୋରିଆ ଜୁବିଲିଙ୍କ କପ୍ ପାଇଛି । ଏମାନେ ଯଥାକ୍ରମେ ୪୬, ୪୧ ଓ ୨୪½ ପଏଣ୍ଟ ପାଇଥିଲେ ।

୪ । ଢାକାଠାରେ ଭାରତ ଓ ପାକିସ୍ଥାନ ମଧ୍ୟରେ ହେଉଥିବା କ୍ରିକେଟ ପ୍ରତିଯୋଗିତା ଅମୀମାଂସିତ ରହିଲା ।

୫ । ନିଖିଳ ଭାରତ ହାର୍ଡ କୋର୍ଟ ଟେନିସ୍ ପ୍ରତିଯୋଗିତାରେ ରାମନାଥନ କ୍ରିଷ୍ଣନ୍ ଏବଂ ରୀତା ଡେଭର ଯଥାକ୍ରମେ ପୁରୁଷ ଓ ସ୍ତ୍ରୀ ବିଭାଗରେ ଚାମ୍ପିଅନ ହେଲେ ।

୬ । ଋଷୀୟ ଫୁଟବଲ ଖେଳାଳୀ ଦଳଙ୍କ ସହିତ ଭାରତୀୟ ଟିମ୍ 'ପ୍ରେସିଡେଣ୍ଟ ଇଲେଭେନ'ଙ୍କ ପ୍ରଥମ ଖେଳ ହଜାରିବାଗ୍‌ଠାରେ ହୋଇଥିଲା । ଏହି ଖେଳରେ ଭାରତୀୟମାନେ ସମ୍ପୂର୍ଣ୍ଣରୂପେ ପରାସ୍ତ ହୋଇଯାଇଛନ୍ତି । ଋଷୀୟଦଳ ୭-୦ ଗୋଲ୍‌ରେ ଜିତିଛନ୍ତି ।

ଏମାନେ ଆସନ୍ତା ମାର୍ଚ୍ଚ ମାସରେ ଓଡ଼ିଶାକୁ ଆସିବାର ସମ୍ଭାବନା ।

୭ । ଆନ୍ତଃ ବିଶ୍ୱବିଦ୍ୟାଳୟ ଦକ୍ଷିଣାଞ୍ଚଳ ହକି ପ୍ରତି-ଯୋଗିତାରେ ମାନ୍ଦ୍ରାଜ ବମ୍ବେକୁ ପରାଜିତ କରିଛନ୍ତି । ସେ ଉତ୍ତରାଞ୍ଚଳର ବିଜୟୀ ଅଲିଗଡ଼ ସହ ଖେଳିବେ ।

—o—

# ଆପଣ ଜାଣିବାକୁ ଚାହାନ୍ତି କି

[୧ । ଗ୍ରାହକ ନମ୍ବର ନ ଦେଲେ ଉତ୍ତର ପାଇବେ ନାହିଁ । ଯେଉଁମାନେ ଏଜେଣ୍ଟଙ୍କଠାରୁ ନିୟମିତ ପତ୍ରିକା କିଣନ୍ତି, ସେମାନେ ଏଜେଣ୍ଟଙ୍କ ନାମସହ ପ୍ରଶ୍ନ ପଠାଇ ପାରିବେ ।

୨ । ଇଂରାଜୀ ମାସର ୨୦ ତାରିଖ ପୂର୍ବରୁ ପ୍ରଶ୍ନଗୁଡ଼ିକ ଆମର ହସ୍ତଗତ ହେବା ଆବଶ୍ୟକ ।

୩ । ଆପଣଙ୍କ ପ୍ରଶ୍ନର ଉତ୍ତର କାହିଁକି ଦିଆ ନ ଗଲା, ତାର କାରଣ ଦର୍ଶାଇବାକୁ ଆମେ ବାଧ୍ୟ ନୋହୁଁ ।

୪ । ପ୍ରଶ୍ନ ସଙ୍ଗେ ଅନ୍ୟ କିଛି ଲେଖିବେ ନାହିଁ ।]

୧ । ନିକୁଞ୍ଜକିଶୋର ମହାନ୍ତି, ହାତୀବନ୍ଧ ।

ପ୍ର—ଆପଣ ଯେପରି ରେଡ଼ିଓ ସମ୍ବନ୍ଧରେ ଲେଖା ପ୍ରକାଶ କରୁଛନ୍ତି, ସେହିପରି ବ୍ୟାଟେରୀ ସମ୍ବନ୍ଧରେ କିଛି ଲେଖିଛନ୍ତି କି ?

ଉ—ଏ ସଂଖ୍ୟାରେ ବ୍ୟାଟେରୀ ସମ୍ପର୍କରେ ଲେଖା ପ୍ରକାଶ ପାଇଛି । ଦେଖନ୍ତୁ ।

୨ । କୁମାରୀ ଊର୍ମିଳା ପଟ୍ଟନାୟକ, ଝାଙ୍ଗୀ ହାଇସ୍କୁଲ ।

ପ୍ର—କେଉଁ କାରଣରୁ ଅର୍ଜ୍ଜୁନଙ୍କର ନାମ ସବ୍ୟସାଚୀ ହୋଇଛି ?

ଉ—ସବ୍ୟ ଅର୍ଥ ବାମ ; ଅର୍ଜ୍ଜୁନ ବାମହସ୍ତରେ ମଧ୍ୟ ବାଣ କ୍ଷେପଣ କରିପାରନ୍ତି ବୋଲି ତାଙ୍କର ଏପରି ନାମ ହୋଇଛି ।

୩ । ଯାନକୁଟୀର ପାଠାଗାର, ତିର୍ତ୍ତୋଲ ।

ପ୍ର—ବର୍ତ୍ତମାନ ଓଡ଼ିଶାରେ କେଉଁ ପତ୍ରିକା ସର୍ବଜନ-ପ୍ରିୟ ?

ଉ—ଏପରି କୌଣସି ପତ୍ରିକା ନାହିଁ । ଆପଣ ଯଦି ଅଧିକ ଜନପ୍ରିୟ ପଚାରିଥାନ୍ତି, ତେବେ ତାର ଉତ୍ତର 'ଦୈନିକ ସମାଜ' ।

୪ । ପୂର୍ଣ୍ଣଚନ୍ଦ୍ର ସାହୁ, ମାଣପଡ଼ା ।

ପ୍ର—ଭାରତର ରାଜଧାନୀକୁ 'ନୂଆଦିଲ୍ଲୀ' ନାମ କାହିଁକି ଦିଆଯାଇଛି ?

ଉ—କାରଣ ପୂର୍ବରୁ ଥିବା ଐତିହାସିକ ଦିଲ୍ଲୀନଗରୀ-ଠାରୁ ସ୍ୱତନ୍ତ୍ର କରି ଏହି ନୂଆ ରାଜଧାନୀକୁ ଗଢ଼ାଯାଇଛି ।

୫ । ଗ୍ରାଃ ନଂ: ୧୯୪୦, ବାଲିଆପାଳ ମେଃ ସ୍କୁଲ ।

ପ୍ର—ଶୀତଦିନେ ନଡ଼ିଆତେଲ ବସିଯାଏ କାହିଁକି ?

ଉ—ଶୀତଦିନେ ବାୟୁମଣ୍ଡଳ ଅପେକ୍ଷାକୃତ ଥଣ୍ଡା ଥାଏ । ସୁତରାଂ ନଡ଼ିଆତେଲରେ ଥିବା ଚର୍ବି ଅଂଶକୁ ଏହା ତରଳ ଅବସ୍ଥାରେ ରଖିପାରେ ନାହିଁ । ନଡ଼ିଆତେଲ ଅପେକ୍ଷା ସୋରିଷ ତେଲରେ ଖୁବ୍ କମ୍ ଚର୍ବି ଥାଏ । ତେଣୁ ଶୀତଦିନେ ତାହା ବସେ ନାହିଁ । ଉତ୍ତାପରେ ଚର୍ବି ତରଳ ରହେ, ତେଣୁ ଖରାଦିନେ ନଡ଼ିଆତେଲ ତରଳ ଅବସ୍ଥାରେ ରହିଥାଏ ।

୬ । ଦୟାନିଧି ମିଶ୍ର, ଯେମାଦେଈପୁର ।

ପ୍ର—ଅର୍ଡ଼ିନାନ୍ସ ଜାରି କରିବାର କ୍ଷମତା କାହାର ଅଛି ?

ଉ—ରାଷ୍ଟ୍ରପତିଙ୍କର ।

୭ । ସେକ୍ରେଟରୀ, ଗଣନାଥ ପାଠାଗାର, ରେକାବିବଜାର

ପ୍ର—କର୍ଣ୍ଣପଟହରେ ଶବ୍ଦତରଙ୍ଗର ଆଘାତ ହେଲେ ଆମେ ଶୁଣିପାରୁ ବୋଲି ବିଜ୍ଞାନ କହେ, ତେବେ ବହୁ ସମୟରେ ଆମେ ଅନ୍ୟମନସ୍କ ଥିବା ଅବସ୍ଥାରେ ଅନ୍ୟମାନଙ୍କ କଥା ଶୁଣିପାରୁ ନାହିଁ କାହିଁକି ?

ଉ—ଆପଣ ଗୋଟିଏ କାମରେ ମନୋନିବେଶ କରି-ଥିଲାବେଳେ ଆପଣଙ୍କ କାନରେ ଅନେକ ଶବ୍ଦ ବାଜେ, ଆଖିରେ ଅନେକ ଦୃଶ୍ୟ ପଡ଼େ, କିନ୍ତୁ ଆପଣ ଯେ ସବୁ ବିଷୟରେ ସଚେତନ ନ ଥାନ୍ତି, ଆପଣଙ୍କ ଚେତନ ମନ ସେତେବେଳେ ତାକୁ ଗ୍ରହଣ କରେ ନାହିଁ ବୋଲି ଆପଣ ଦେଖି ଦେଖନ୍ତି ନାହିଁ, ଶୁଣି ଶୁଣନ୍ତି ନାହିଁ । ପରେ ମନେ ପକାଇଲେ ବି କିଛି ମନେ ପଡ଼େ ନାହିଁ । ସବୁ ଅସ୍ପଷ୍ଟ ବୋଧହୁଏ । ତେଣୁ ଆଖି ଦେଖେ, କାନ ଶୁଣେ ଏପରି ନ କହି ଆଖି ସାହାଯ୍ୟରେ ମନ ଦେଖେ, କାନ ସାହାଯ୍ୟରେ ମନ ଶୁଣେ ଏପରି କହିବା ଠିକ୍ ହେବ । ମନ ଯେତେ-ବେଳେ ପ୍ରସ୍ତୁତ ନାହିଁ, ଆଖି ଖୋଲା ଥିଲେ ବି ଦେଖୁଛି କିଏ, ଶୁଣୁଛି କିଏ ? ସେଇଥିପାଇଁ ଶୋଇଲା ବେଳେ କିଛି ଶୁଭେନାହିଁ ।

୮ । ଗଣେଶ୍ୱର ପାତ୍ର, ନୂଆଲ ହାଇସ୍କୁଲ

ପ୍ର—କବିତା, ପ୍ରବନ୍ଧ ଓ ପ୍ରଶ୍ନ ଇତ୍ୟାଦି ପତ୍ରିକା ଅଫିସକୁ ବୁକ୍ ପୋଷ୍ଟରେ ପଠାଯାଇ ପାରିବ କି ନା ?

ଉ—ହଁ, ପଠାଯାଇ ପାରିବ, କିନ୍ତୁ ତା ସଙ୍ଗେ କୌଣସି ଚିଠି ରହିବ ନାହିଁ । ଚିଠିଦେଲେ ତାହା ବେଆଇନ ହୋଇଯିବ କାରଣ ବୁକ୍‌ପୋଷ୍ଟରେ ଚିଠି ପଠାଇବା ଅବୈଧ ।

୯ । ବଂଶୀଧର ମିଶ୍ର, କେନ୍ଦୁଝର

ପ୍ର—ଭାରତରେ କଣ ଟେଲିଭିଜନ୍ ଯନ୍ତ୍ର ଅଛି ? ତାହା କେଉଁଠାରେ ?

ଉ—ଗତମାସରେ ସର୍ବ ପ୍ରଥମେ 'ଫିଲିପ୍‌ସ୍' କମ୍ପାନୀଙ୍କ ଆନୁକୂଲ୍ୟରେ କଲିକତାରେ ଟେଲିଭିଜନ ପ୍ରଦର୍ଶିତ ହୋଇ ଥିଲା । ସାଧାରଣରେ ଟେଲିଭିଜନ ପ୍ରଦର୍ଶନ ଭାରତରେ ଏହା ସର୍ବପ୍ରଥମ । ଖୁବ୍ ନିକଟରେ ବମ୍ବେ ଓ ଅନ୍ୟାନ୍ୟ ସହରରେ ଟେଲିଭିଜନ ସ୍ଥାପନ କରିବାପାଇଁ ସରକାର ଚେଷ୍ଟା କରୁଛନ୍ତି ।

୧୦ । ମଧୁସୂଦନ ମିଶ୍ର, ଜୟପୁର

ପ୍ର—ଅନ୍ଧାର ରାତିରେ ଆକାଶରୁ ନିଆଁ ହୁଳାପରି କଣ ଖସିପଡ଼ି ପୁଣି ଲିଭିଯାଏ ? ଲୋକେ ତାକୁ ତାରା ଖସିଲା ବୋଲି କହନ୍ତି । ତାହା ପ୍ରକୃତରେ କଣ ?

ଉ—ଏହା ଉଲ୍‌କାପାତ । ଅସଂଖ୍ୟ ଉଲ୍‌କା ପ୍ରଚଣ୍ଡ ବେଗରେ ଆକାଶରେ ଭ୍ରମଣ କରୁଅଛନ୍ତି । ସେମାନଙ୍କର ନିଜର କୌଣସି ଆଲୋକ ନାହିଁ । ବୁଲିବୁଲି ପୃଥିବୀର ନିକଟବର୍ତ୍ତୀ ହେଲେ ପୃଥିବୀର ଆକର୍ଷଣ ଫଳରେ ଟଳି-ଆସନ୍ତି—ବାୟୁମଣ୍ଡଳ ଭେଦକରି ଆସିବା ସମୟରେ ବାୟୁ-ସହିତ ସଂଘର୍ଷଣ ଯୋଗୁ ଉତ୍ତପ୍ତ ହୋଇ ଜଳିଲାପରି ଦେଖାଯାନ୍ତି । କେତେକ ଉଲ୍‌କା ପୃଥିବୀରେ ପହଞ୍ଚିବା ପୂର୍ବରୁ ପାଉଁଶ ହୋଇ ଯାଇଥାନ୍ତି । ବଡ଼ଗୁଡ଼ିକ ସମ୍ପୂର୍ଣ୍ଣ ପାଉଁଶ ନ ହୋଇ ପୃଥିବୀରେ ପଡ଼ନ୍ତି । ସେଗୁଡ଼ିକ ଲୌହ, ନିକେଲ୍ ଆଦି ଧାତୁରେ ଗଠିତ ହୋଇଥିବାର ଦେଖାଯାଏ ।

୧୧ । ସମରେନ୍ଦ୍ର ମହାପାତ୍ର, ବ୍ରହ୍ମପୁର ।

ପ୍ର—ବ୍ଲଟିଂ ପେପର କାଳି ଶୋଷିନିଏ କିନ୍ତୁ ଭଲ କାଗଜ ଶୋଷେନାହିଁ କାହିଁକି ?

ଉ—ପାଣି ବାଲ୍‌ଟିରେ ଗୋଟିଏ ଗାମୁଛା ବୁଡ଼ାଇ ରଖି ଗାମୁଛାର ଅନ୍ୟ ମୁଣ୍ଡଟି ବାହାରକୁ ରଖିଦେଲେ ଦେଖା-ଯାଏ ବାଲ୍‌ଟିର ପାଣି ଗାମୁଛାରେ ଉଠି ତଳକୁ ପଡ଼ିବ । ସେପରେ ସେହିପରି ବତୀ ତେଲ୍ ଟାଣିନିଏ । ଏହାକୁ ବିଜ୍ଞାନ ଭାଷାରେ capillary ବା କୈଶିକ ଆକର୍ଷଣ କହନ୍ତି । ବ୍ଲଟିଂ କାଗଜ ଦେହରେ ଯେଉଁ କ୍ଷୁଦ୍ର କ୍ଷୁଦ୍ର ରୁଅ ବା ଶିଅମାନ (fibres) ରହିଛି ତାର ଅନ୍ତର୍ଗତ ଫାଙ୍କା ସ୍ଥାନ ମାନଙ୍କୁ କାଳି ଟାଣି ହୋଇଯାଏ (ଠିକ୍ ଯେପରି ବତୀରେ ତେଲ ଉଠେ) । ଭଲ କାଗଜରେ ଉକ୍ତ ଫାଙ୍କା ସ୍ଥାନମାନ ମଣ୍ଡଦ୍ୱାରା ଭରଣି କରାଯାଇଥାଏ । ତେଣୁ କାଳି ଯିବାକୁ ବାଟ ନ ଥାଏ । ଏହାକୁ ଆମେ କହୁ—'କାଳି ଚଯୁନାହିଁ ।'

୧୨ । ଅଜିତ୍‌କୁମାର ଧଳ, ସମ୍ବଲପୁର ।

ପ୍ର—ପ୍ରକୃତରେ ଥିବା ଜଳମଧ୍ୟରେ ସର୍ବାପେକ୍ଷା ବିଶୁଦ୍ଧ କିଏ ?

ଉ—ବୃଷ୍ଟିଜଳ ।

୧୩ । ଦୟାନିଧି ମିଶ୍ର, ବାଲେଶ୍ୱର ।

ପ୍ର—ଭାରତର ମୁଖ୍ୟ ନିର୍ବାଚନ କମିଶନର କିଏ ? ତାଙ୍କର କାମ କଣ ?

ଉ—ଶ୍ରୀ ସୁକୁମାର ସେନ ଭାରତର ଚିଫ୍ ଇଲେକ୍‌ସନ କମିଶନର ଅଟନ୍ତି । ରାଷ୍ଟ୍ରର ନିର୍ବାଚନ ପରିଚାଳନା, ପର୍ଯ୍ୟବେକ୍ଷଣ ଓ ନିୟନ୍ତ୍ରଣ ତାଙ୍କର କାର୍ଯ୍ୟ ।

—o—

# ପାଟିସୁଆଦ

ଡାକ୍ତରଙ୍କଠାରୁ ଔଷଧ ଆଣି ସଦେଇ ରୋଗୀକୁ ଖାଇବାକୁ ଦେଲା । ଔଷଧ ଦେଇସାରିଲାପରେ ସଦେଇର ମନେ ପଡ଼ିଲା ଡାକ୍ତର କହିଥିଲେ 'ଦେବା ପୂର୍ବରୁ ଶିଶିକୁ ଭଲକରି ହଲାଇ ଦେବ ।' କଣ କରାଯାଏ ? ଔଷଧ ତ ରୋଗୀର ପେଟ ଭିତରକୁ ଯାଇ ସାରିଲାଣି । ସେ ରୋଗୀକୁ ଆଚ୍ଛାକରି ପ୍ରଚଣ୍ଡେ ହଲାଇ ଦେଲା । ରୋଗୀ କଥା ଶେଷ !

× × ×

ଅନେକଗୁଡ଼ିଏ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇସାରିବା ପରେ ଶେଷରେ ପିଲାର ବୁଦ୍ଧିପରୀକ୍ଷା ହେଉଥାଏ । ଖୁବ୍ ସତର୍କତା ସହିତ ଉତ୍ତର ଦେବାକୁ ତାକୁ ପୂର୍ବରୁ ସାବଧାନ କରି ଦିଆଯାଇଥାଏ ।

ପରୀକ୍ଷକ ପଚାରିଲେ, "ଜଣେ ଲୋକ ଚାରିଅଣା ୭ପାହୁଲାରେ ଗୋଟିଏ ଜିନିଷ କିଣି ତାହାକୁ ତିନିଅଣା ୯ ପାହୁଲାରେ ବିକିଲା । ତାର ଲାଭ ହେଲା ନା କ୍ଷତି ହେଲା ?"

କିଛି ସମୟ ଗମ୍ଭୀର ଚିନ୍ତା କରି ପିଲାଟି ଉତ୍ତର ଦେଲା "ଅଣାବାଟେ କ୍ଷତି ହେଲା କିନ୍ତୁ ପାହୁଲାବାଟେ ଲାଭ ହେଲା ।"

—o—



# ଓଡ଼ିଶା ଖବର

ତା ୩୦ । ୧୨— ଆଗାମୀ ଦୁଇବର୍ଷ ପାଇଁ ଶ୍ରୀ ବିଶ୍ୱନାଥ ଦାସ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ସଭାପତି ନିର୍ବାଚିତ ହେଲେ ।

ତା ୮।୧—ନିଖିଳଭାରତ ହସ୍ତଶିଳ୍ପ ବୋର୍ଡର ଚେୟାରମାନ ଶ୍ରୀମତୀ କମଳାଦେବୀ ଚଟ୍ଟୋପାଧ୍ୟାୟଙ୍କ ଓଡ଼ିଶା ଆଗମନ ।

ତା ୧୨—ମହାନଦୀ ଉପରେ ୨ୟ ପଞ୍ଚବାର୍ଷିକ ଯୋଜନାରେ ପୋଲ ତିଆରି ଆରମ୍ଭ ହେବ ବୋଲି ଜଣାଯାଇଛି ।

ତା ୧୬ –କେନ୍ଦ୍ର ପୂର୍ତ୍ତମନ୍ତ୍ରୀ ସର୍ଦ୍ଦାର ସ୍ୱରଣ ସିଂଙ୍କ ଓଡ଼ିଶା ଆଗମନ ।

ତା ୨୪—ଆସନ୍ତା ଫେବୃୟାରୀ ମାସରେ ସୀମା କମିଶନର ଓଡ଼ିଶା ଗସ୍ତରେ ଆସିବେ ଏବଂ ୧୩ ତାରିଖରୁ ୧୭ ତାରିଖ ଯାଏ ଓଡ଼ିଶାରେ ରହିବେ ।

ତା ୨୬—ଓଡ଼ିଶା ଆସେମ୍ବ୍ଲିର ବଜେଟ ଅଧି-ବେଶନ ଫେବୃୟାରୀ ୨୧ତାରିଖରେ ଆରମ୍ଭ ହେବ ।

—ସାଧାରଣତନ୍ତ୍ର ଦିବସରେ ଭୁବନେଶ୍ୱରରେ ବିରାଟ ଆଦିବାସୀ ମେଳା ଉଦ୍‌ଘାଟିତ ହେଲା ।

ତା ୨୬—କଟକରେ ଆଉ ଅଧିକ ୨୦୦ ଟେଲିଫୋନ ବ୍ୟବସ୍ଥା ପ୍ରସାରପାଇଁ ଶକ୍ତି ବୃଦ୍ଧି କରାଗଲା ।

ତା ୨୯—କେନ୍ଦ୍ର ବେତାର ବିଭାଗ ମନ୍ତ୍ରୀ ଡଃ ବି. ଭି. କେଶକାର ଓଡ଼ିଶା ଆସି ରେଭେନ୍ସା କଲେଜ ପ୍ରତିଷ୍ଠା ଦିବସରେ ପ୍ରଧାନ ଅତିଥିରୂପେ ଯୋଗ ଦେଲେ ।

# ଭାରତ ଖବର

ତା ୧ । ୧—ଭାରତର ବିଖ୍ୟାତ ବୈଜ୍ଞାନିକ ଓ ପ୍ରାକୃତିକ ସମ୍ପଦ ଓ ବୈଜ୍ଞାନିକ ଗବେଷଣା ବିଭାଗର ସେକ୍ରେଟାରୀ ଡଃ ଶାନ୍ତିସ୍ୱରୂପ ଭଟ୍ଟନାଗରଙ୍କର ହୃଦ୍-ଯନ୍ତ୍ରଣାରେ ମୃତ୍ୟୁ ହେଲା ।

ତା ୨—ଭାକ୍ରାନଙ୍ଗଲ ବିଦ୍ୟୁତ୍ ଯୋଗାଣ ରାଷ୍ଟ୍ରପତି ଡଃ ରାଜେନ୍ଦ୍ରପ୍ରସାଦଙ୍କ ଦ୍ୱାରା ଉଦ୍‌ଘାଟିତ ହେଲା । ଏଠାରୁ ୨୪୦୦୦ କିଲୋଓ୍ୱାଟ ବିଜୁଳି ଶକ୍ତି ପାଞ୍ଚୋଟି ପ୍ରଦେଶ—ପଞ୍ଜାବ, ପେପ୍‌ସୁ, ରାଜସ୍ଥାନ, ହିମାଚଳ ପ୍ରଦେଶ ଏବଂ ଦିଲ୍ଲୀକୁ ଯୋଗାଇ ଦିଆଯିବ ।

ତା ୩—ଉତ୍ତର ପ୍ରଦେଶର ମୁଖ୍ୟମନ୍ତ୍ରୀ ପଣ୍ଡିତ ଗୋବିନ୍ଦ ବଲ୍ଲଭ ପନ୍ଥ କେନ୍ଦ୍ର ଘରୋଇ ମନ୍ତ୍ରୀ ରୂପେ ଶପଥ ନେଲେ । ଘରୋଇ ମନ୍ତ୍ରୀ ଡଃ କାଟ୍‌ଜୁ ଦେଶରକ୍ଷା ବିଭାଗର ଦାୟିତ୍ୱ ନେଲେ ।

—ଜାତିସଙ୍ଘର ସେକ୍ରେଟାରୀ ଜେନେରାଲ ମିଃ ହାମାରସ୍କ୍‌ଜୋଏଲ୍‌ଡ଼ ଚୀନ ଯିବା ବାଟରେ ଦିଲ୍ଲୀରେ ପହଞ୍ଚିଥିଲେ ।

ତା ୪—ପ୍ରଫେସର ଏସ୍. କେ. ମିତ୍ର ଚଳିତ ବର୍ଷପାଇଁ ବିଜ୍ଞାନ କଂଗ୍ରେସର ସଭାପତି ନିର୍ବାଚିତ ହେଲେ ।

ତା ୧୩— ଆସନ୍ତା ଜୁନ୍ ମାସରେ ପଣ୍ଡିତ ନେହେରୁ ରୁଷ ପରିଦର୍ଶନରେ ଯିବେ ବୋଲି ଜଣା ଯାଇଅଛି ।

ତା ୨୩—ଭାରତ ଜାତୀୟ କଂଗ୍ରେସ ଷଷ୍ଠିତମ ହୀରକ-ଜୁବିଲି ଉତ୍ସବ ୨୧ ତାରିଖରେ ଆଭାଦୀଠାରେ ହୋଇ ୨୩ ତାରିଖରେ ସମାପ୍ତ ହେଲା ।

ତା ୨୪—ଆସନ୍ତା ନିଖିଳ ଭାରତ କଂଗ୍ରେସ କମିଟି ବୈଠକ ଓଡ଼ିଶାରେ ବସିବା ସମ୍ଭାବନା ଅଛି ।

ତା ୨୫—ଶ୍ରୀ ହରେକୃଷ୍ଣ ମହତାବ ବମ୍ବେର ଲାଟରୂପେ ନିଯୁକ୍ତ ହେଲେ । ସେ ଆସନ୍ତା ମାର୍ଚ୍ଚ ମାସରେ କାର୍ଯ୍ୟଭାର ଗ୍ରହଣ କରିବେ ।

ତା ୨୬—ଭାରତ ସାଧାରଣତନ୍ତ୍ର ଦିବସରେ ଯୋଗ ଦେବାପାଇଁ ପାକିସ୍ଥାନର ବଡ଼ଲାଟ ମିଃ ଗୋଲାମ ମହମ୍ମଦ ଭାରତ ଆସିଥିଲେ ।

—ଭାରତର ପ୍ରଥମ ଫଟୋ ଟେଲିଗ୍ରାଫ ସର୍ଭିସ ବମ୍ବେ ଦିଲ୍ଲୀ ମଧ୍ୟରେ ସ୍ଥାପିତ ହେଲା ।

ତା ୨୯—ଭାରତୀୟ ସ୍ଥଳ ବାହିନୀରେ ଲେଫ୍‌ଟେନାଣ୍ଟ ଜେନେରାଲ ଶ୍ରୀ ନଗେଶ ପ୍ରଧାନ ସେନାପତି ନିଯୁକ୍ତ ହେଲେ ।

## ବିଦେଶ ଖବର

ତା ୩୦ । ୧୨—ଚଳିତ ବର୍ଷ ଯେଉଁ ଏସିଆ-ଆଫ୍ରିକା ସମ୍ମିଳନୀ ହେବ ସେଥିରେ ଚୀନ ଓ ଜାପାନ ସମେତ ଏସିଆର ୨୫ ଟି ରାଷ୍ଟ୍ର ଯୋଗ ଦେବାର ନିଷ୍ପତ୍ତି ହୋଇଛି ।

ତା ୩ । ୧—ପାନାମାର ପ୍ରେସିଡେଣ୍ଟ ଜୋସ୍ ଆଣ୍ଟୋନିଓ ରେମନ୍‌ଙ୍କର କେତେକ ଅଜଣା ଲୋକଙ୍କ ଗୁଳି ମାଡ଼ରେ ମୃତ୍ୟୁ ହେଲା ।

ତା ୨୫—ମାର୍ଶାଲଟିଟୋ ଭାରତରୁ ନିଜ ଦେଶକୁ ବାହୁଡ଼ି ଗଲେ ।

—୦—

### ଦରକାର ବେଳେ କର୍ମରେ ଆସିବ

୧ । ବିଶ୍ୱବିଦ୍ୟାଳୟ ଡିଗ୍ରୀପାଇଁ ଡିଗ୍ରୀପାଠ୍ୟ ୩ବର୍ଷ ରହିଲା । ମାଧ୍ୟମିକ ଶିକ୍ଷାର ଶେଷଶ୍ରେଣୀ ୧୧ଶ ଶ୍ରେଣୀ ହେବ ଏବଂ ଅନ୍ୟୁନ ୧୦ ବର୍ଷକାଳ ଶିକ୍ଷା ପାଇ ସାରିବା ପରେ ଏ ଶିକ୍ଷା ଶେଷ ହେବ । କଲେଜରେ ପ୍ରବେଶ କରିବାର ବୟସସୀମା ୧୭ ବର୍ଷ ରଖାଯିବାର ସ୍ଥିର ହେଲା ।

୨ । ଗଲା ସାଧାରଣତନ୍ତ୍ର ଦିବସରେ ରାଷ୍ଟ୍ରପତି ଭାରତର ୩୦ଜଣ ବ୍ୟକ୍ତିଙ୍କୁ ବିଭିନ୍ନ ପଦକ ପ୍ରଦାନ କରିଛନ୍ତି । ଏମାନଙ୍କ ମଧ୍ୟରେ ଓଡ଼ିଶାର ଡଃ ପ୍ରାଣକୃଷ୍ଣ ପରିଜାଙ୍କୁ ପଦ୍ମଭୂଷଣ ଓ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁଙ୍କୁ ପଦ୍ମଶ୍ରୀ ପଦକ ଯଥାକ୍ରମେ ଶିକ୍ଷା ଓ ସମାଜ ସେବାପାଇଁ ଏବଂ ଓଡ଼ିଶାର ପୋଲିସ ଅଫିସର ଶ୍ରୀ ମୃତ୍ୟୁଞ୍ଜୟ ତ୍ରିପାଠୀ ଓ ଶ୍ରୀ ରାମଚନ୍ଦ୍ର ଦାଶଙ୍କୁ ରାଷ୍ଟ୍ରପତି ପୋଲିସ ପଦକ ଦିଆଯାଇଛି ।

ବନାରସର ଦାର୍ଶନିକ ଶ୍ରୀ ଭଗବାନ ଦାସ ଓ ଇଞ୍ଜିନିଅର ଶ୍ରୀ ଏମ୍. ବିଶ୍ୱେଶ୍ୱରେୟାଙ୍କୁ ଭାରତର ସର୍ବୋଚ୍ଚ ପଦକ 'ଭାରତରତ୍ନ' ପ୍ରଦାନ କରାଯାଇଛି ।

—୦—




### ମସ୍ତିଷ୍କ ଅପରେସନ ଯନ୍ତ୍ର—

ଆମେରିକାର ଇଲିନଏସ୍ ବିଶ୍ୱବିଦ୍ୟାଳୟର ବୈଜ୍ଞାନିକମାନେ ମସ୍ତିଷ୍କ ଅପରେସନ ପାଇଁ ଗୋଟିଏ ନୂଆ ଧରଣର ଯନ୍ତ୍ର ଆବିଷ୍କାର କରିଛନ୍ତି । ଏହା ଦ୍ୱାରା ମସ୍ତିଷ୍କର ଯେଉଁ ସ୍ଥାନରେ ଅପରେସନ ଆବଶ୍ୟକ ହେବ, ସେଠାରେ ଏକ ପ୍ରକାର କିରଣ ପକାଇ ଦିଆଯିବ । ଫଳରେ ୧/୨୦ ଇଞ୍ଚ ସ୍ଥାନରେ ଚତୁର୍ଦ୍ଦିଗର ଶିରାପ୍ରଶିରାର କିଛି ସମ୍ପର୍କ ରହିବ ନାହିଁ । ଏହା ଦ୍ୱାରା ଅନ୍ୟାନ୍ୟ ଅଙ୍ଗର କୌଣସି କ୍ଷତି ହେବ ନାହିଁ । ଏହା ବର୍ତ୍ତମାନ ସୁଦ୍ଧା କୌଣସି ମନୁଷ୍ୟ ପ୍ରତି ପ୍ରୟୋଗ କରାଯାଇ ନାହିଁ । କେତେକ ଜୀବଜନ୍ତୁଙ୍କ ପ୍ରତି ପରୀକ୍ଷା କରାଯାଇ, ପରେ ମନୁଷ୍ୟପ୍ରତି ପ୍ରୟୋଗ କରାହେବ ।

### ରକ୍ତଚାପ ପାଇଁ ନୂଆ ଔଷଧ—

ଆମେରିକାର କ୍ଲେଏସ୍‌ଭିଲ ବିଶ୍ୱବିଦ୍ୟାଳୟର ମେଡ଼ିକାଲ ସ୍କୁଲରେ ଡାକ୍ତରମାନେ କାଠମଣ୍ଡ ଓ ସୋୟାବିନ ଗଛରୁ ରକ୍ତଚାପ ନିବାରକ ଔଷଧ ପ୍ରସ୍ତୁତ କରିବା ନିମନ୍ତେ ଚେଷ୍ଟା କରୁଅଛନ୍ତି ।

### ଗାଜେଟ୍

ଗ୍ରୀସ୍ ଓ ଯୁଗୋସ୍ଲୋଭିଆରେ ଛୋଟ କୃଷକମାନେ ଗାଜେଟ ନାମକ ଗୋଟିଏ ସରଳ ଯନ୍ତ୍ର ବ୍ୟବହାର କରି କୃଷିକାର୍ଯ୍ୟରେ ବିଶେଷ ଉପକାର ପାଉଛନ୍ତି । ଏହାକୁ ଘୋଡ଼ା ଟାଣି ଟାଣି ଚଳାଏ । ଏହି ଯନ୍ତ୍ର ସାହାଯ୍ୟରେ ହଳ ଚଷ ହୁଏ, ଜମିରେ ମଇ ଦେଇ ହୁଏ, ବାଲୁଙ୍ଗା କଟାଯାଏ ଓ ମଞ୍ଜି ବା ବିହନ ବୁଣାହୁଏ । ଆମେରିକାର କୃଷିବିଶେଷଜ୍ଞମାନଙ୍କ ଦ୍ୱାରା ସେଠାକୁ ଅଣାଯାଇ ଏହି ଯନ୍ତ୍ର ବିଶେଷ ଲୋକପ୍ରିୟ ହୋଇଛି । ଗୋଟିଏ ଗାଜେଟ୍‌ର ମୂଲ୍ୟ ପ୍ରାୟ ୭୫ ଟଙ୍କା ।

—୦—

# ପୁସ୍ତକ ପରିଚୟ

**ବ୍ରହ୍ମଚର୍ଯ୍ୟ ବିଜ୍ଞାନ**—ସ୍ୱାମୀ ରାମପ୍ରେମୀ ଓଡ଼ିଆରେ ଏହି ପୁସ୍ତକଟି ଅନୁବାଦ କରି ଧନ୍ୟବାଦାର୍ହ ହୋଇଛନ୍ତି । ମୂଳଗ୍ରନ୍ଥର ଲେଖକ ସ୍ୱାମୀ ଶିବାନନ୍ଦ । ଏହି ପୁସ୍ତକଖଣ୍ଡି ଛାତ୍ର ଛାତ୍ରୀଙ୍କର ଚରିତ୍ରଗଠନରେ ବିଶେଷ ସହାୟକ ହେବ । ପୂର୍ବ କାଳର ଆଦର୍ଶ ଗୁରୁଗୃହ ଆଜିକାଲି ନାହିଁ । ଶିକ୍ଷା-ପଦ୍ଧତି ବଦଳି ଯାଇଛି । ସମାଜର ଆଦର୍ଶ ଓ ରୀତିନୀତି ମଧ୍ୟ ବଦଳିଛି । ହେଲେହେଁ ଚରିତ୍ରଗଠନର ଆବଶ୍ୟକତା ପୂର୍ବପରି ରହିଛି । ଚୁରିଆଡ଼େ ପ୍ରଲୋଭନର ମାୟାଜାଲ ଆମ ବାଳକ ବାଳିକାମାନଙ୍କୁ ଘେରି ପକାଇଲାଣି । ଏତେ-ବେଳେ ଏପରି ଖଣ୍ଡିଏ ଖଣ୍ଡିଏ ଉପାଦେୟ ପୁସ୍ତକ ସେମାନଙ୍କର ପଥ ପ୍ରଦର୍ଶକ ହେବ, ସନ୍ଦେହ ନାହିଁ । ଡବଲ କ୍ରାଉନ ୧୬ ପେଜି ୧୪୪ ପୃଷ୍ଠା; କେତେଗୋଟି ଯୌଗିକ ଆସନର ଚିତ୍ର ସହ—ମୂଲ୍ୟ ଟ ୧ ୳୵ ।

**ଅତିଥି**—ସାମାଜିକ ନାଟକ । ଉଦୀୟମାନ ନାଟ୍ୟ-କାର ଶ୍ରୀମାନ୍ ଭଞ୍ଜକିଶୋର ଓଡ଼ିଶାରେ ଆଜି ସୁପରିଚିତ । ତାଙ୍କର ନାଟକଗୁଡ଼ିକ ଅନ୍ନପୂର୍ଣ୍ଣା ନାଟ୍ୟଶିଳ୍ପୀମାନଙ୍କଦ୍ୱାରା ଅଭିନୀତ ହୋଇ ଓଡ଼ିଶାର ହଜାର ହଜାର ଦର୍ଶକଙ୍କୁ ଆନନ୍ଦ ଦେଇଛି ଓ ଦେଉଛି । ଅତିଥି ନାଟକରେ ନାଟ୍ୟ-କାର ଚରିତ୍ରଚିତ୍ରଣର କୁଶଳତା ଦେଖାଇବା ସଙ୍ଗେ ସଙ୍ଗେ ଆଧୁନିକ କବି ଓ ଲେଖକ ଜୀବନର ଗୋଟିଏ କରୁଣ ଅଥଚ ହାସ୍ୟୋଦ୍ଦୀପକ ଚିତ୍ର ଅଙ୍କନ କରିଛନ୍ତି । ଅତିଥିର କବି ଦୁର୍ଦ୍ଦଶାଗ୍ରସ୍ତ ସତ୍ୟ, ତାଙ୍କର ପ୍ରତିଭା ଅନାଦୃତ, ତଥାପି ସେ ମ୍ରିୟମାଣ ନୁହନ୍ତି । ସେ ନିଜେ ହସି ଅନ୍ୟକୁ ହସାଇଛନ୍ତି । ତା ଛଡ଼ା ଏ ଯୁଗର ତଥାକଥିତ ପ୍ରଗତିଶୀଳ କବିତା ରଚନାକୁ ଯେପରି ଏ ନାଟକରେ ବ୍ୟଙ୍ଗ କରା ଯାଇଛି ତାହା ବେଶ୍ ଉପଭୋଗ୍ୟ ହୋଇଛି । ଭାଷା ଓ ସଂଳାପରେ ମଧ୍ୟ 'ଅତିଥି' ପଛରେ ପଡ଼ିନାହିଁ । ଓଡ଼ିଶାର ରକ୍ଷଣଶୀଳ ସଂସ୍କୃତି ସଙ୍ଗେ ଆଧୁନିକ ଶିକ୍ଷା ଓ ସଭ୍ୟତାର ସଂଘର୍ଷ ନାଟକର ମୂଳ ଭିତ୍ତି ପରି ମନେହୁଏ । ମୋଟଉପରେ ସବୁ ଶ୍ରେଣୀର ଦର୍ଶକମାନଙ୍କପାଇଁ ଏଥିରେ ଯଥେଷ୍ଟ ଉପାଦାନ ରହିଛି ।

**ନାଟକ ମଞ୍ଜରୀ**— ଲେଖକ ଶ୍ରୀ ଦେବାର୍ଚ୍ଚନ ଭୋଇ ଏମ୍: ଏ: । ଡବଲକ୍ରାଉନ ୧୬ ପେଜି ୧୦୪ ପୃଷ୍ଠା—ମୂଲ୍ୟ ଟ ୧୳ । ଏ ବହିରେ ଲେଖକ ୧୦ଟି ସଂସ୍କୃତ ନାଟକର କଥା ବସ୍ତୁକୁ ଓଡ଼ିଆରେ ଗଳ୍ପାକାରରେ ରୂପ ଦେଇଛନ୍ତି । ଗଳ୍ପଗୁଡ଼ିକ ଚିତ୍ତାକର୍ଷକ ହୋଇଛି ଏବଂ ଭାଷା ଯଥାସମ୍ଭବ ମୂଳ ସଂସ୍କୃତର ଅନୁଗାମୀ ହୋଇଛି । ପ୍ରାଇଜ୍ ଲାଇବ୍ରେରୀ ପାଇଁ ଉପଯୋଗୀ । ମୁଦ୍ରଣ ଅକ୍ଷର ରୁଚିକର ହେବା ଉଚିତ ଥିଲା ।

—○—

## ବିଶ୍ୱାସ କର ବା ନ କର

୧ । ଯେଉଁ ବିମାନ ପଥରେ ହାତୀ ନିଆ ଅଣା ହୁଏ, ସେଥିରେ ହାତୀ ସହିତ ଗୋଟିଏ କୁକୁଡ଼ା ପଠାଯାଏ । କୁକୁଡ଼ାର ପ୍ରଭାବ ହାତୀ ଉପରେ ଏପରି ପଡ଼େ ଯେ ସେ ଧୀରସ୍ଥିର ହୋଇ ରହେ ।

୨ । ରେଓ୍ୱାରେ ହେଉଥିବା ପ୍ରଦର୍ଶନୀରେ ଦୁଇଜଣ ଲୋକ ନିଜକୁ ପ୍ରଦର୍ଶନ କରିବାକୁ ଗୋଟିଏ ସୋ ଷ୍ଟଲ୍ ଖୋଲିଥିଲେ । ସେମାନଙ୍କ ମଧ୍ୟରୁ ଜଣକର ଉଚ୍ଚତା ୨ଫୁଟ ୨ଇଞ୍ଚ ଓ ସେ ୧ଫୁଟ ଲମ୍ବାର ଯୋତା ବ୍ୟବହାର କରେ ଏବଂ ଅନ୍ୟ ଜଣଙ୍କର ଉଚ୍ଚତା ୬ଫୁଟ ୯ଇଞ୍ଚ ।

୩ । କେବଳ ନିଉୟର୍କ ସହରରେ ୪୬୧ ଟି ସିନେମା ଗୃହ ଅଛି ।

—○—

## ବୁଦ୍ଧିପରୀକ୍ଷା ଉତ୍ତର

୧ । ନବୀନ, ସାଲସା, ବାହାବା, ଦରଦ, ମହମ ।

୨ । (କ)ଆମ୍ବରେ ବେଶୀ ଗଛ (ଖ)ସୁବାସିତ (ଗ)ବରଗୁଡ଼ି

୩ । ଧ

୪ । ପଶ୍ଚିମକୁ

୫ । ବଂଶୀ—୬୬ ରତନ—୭୮ ଗୋପାଳ—୧୦୨

## ପରୀକ୍ଷା କରି ଦେଖ

ଜନ୍ମମାସର ସଂଖ୍ୟାକୁ ୨ରେ ଗୁଣି ୫ ମିଶାଅ । ମିଶାଣ ଫଳକୁ ୫୦ରେ ଗୁଣି ସେଥିରେ ତୁମର ବର୍ତ୍ତମାନ ବୟସ ମିଶାଇ ୨୫୦ ଫେଡ଼ । ଯାହା ଫଳ ରହିଲା ତାର ପ୍ରଥମ ସଂଖ୍ୟାଟି ଜନ୍ମମାସ ଓ ଅନ୍ୟ ଦୁଇଟି ତୁମର ବର୍ତ୍ତମାନ ବୟସ । ୪ଟି ସଂଖ୍ୟା ରହିଲେ ପ୍ରଥମ ଦୁଇଟି ଜନ୍ମମାସ ଓ ଶେଷ ଦୁଇଟି ବୟସ ।

—ଶ୍ରୀ ଚନ୍ଦ୍ରଶେଖର ମିଶ୍ର

Printed & Published by Sri R. K. Nanda B. A. D. Ed. at the Parijat Press,
Telengabazar, Cuttack-1—1955.

# ବଂଧୁ ବିଭାଗ C/O SANSAR

ଅନେକ ପାଠକ ପାଠିକା ବହୁଦିନୁ ଏହି ବିଭାଗଟି ଖୋଲିବା ପାଇଁ ଆମକୁ ଅନୁରୋଧ କଲେଣି । ରାଜ୍ୟର ବିଭିନ୍ନ ଅଞ୍ଚଳରେ ଥିବା ସମବୟସ୍କ ଓ ସମରୁଚି, ସମଆକାଂକ୍ଷା ପୋଷଣ କରୁଥିବା ପିଲାମାନଙ୍କ ମଧ୍ୟରେ ଭାବବିନିମୟର ସୁବିଧା କରିଦେବା ଏ ବିଭାଗର ଲକ୍ଷ୍ୟ ।

## ନିୟମାବଳୀ

୧ । ଏହି ବିଭାଗର ସୁଯୋଗ ନେବାକୁ ଇଚ୍ଛା କରୁଥିବା ଯେ କେହି ଛାତ୍ର, ଛାତ୍ରୀ ନିମ୍ନଲିଖିତ କୁପନଟିକୁ ପୂରଣ କରି ୫୦୯ ର ଡାକଟିକେଟ ସହ ଆମ ଅଫିସକୁ ପଠାଇବେ ।

୨ । ସେ ଯେପରି ବଂଧୁଙ୍କ ସହ ପତ୍ର ସମ୍ପର୍କ ରଖିବାକୁ ଇଚ୍ଛା କରନ୍ତି, ସେହିପରି ଜଣେ ବଂଧୁଙ୍କର ସନ୍ଧାନ ପାଇଲାମାତ୍ରେ ଆମେ ତାଙ୍କ ନିକଟକୁ ସ୍ୱତନ୍ତ୍ର ପତ୍ରଦ୍ୱାରା ଉକ୍ତ ବଂଧୁଙ୍କ ଠିକଣା ଜଣାଇ ଦେବୁ । ସେପରି ଠିକଣା ନ ପାଇବା ପର୍ଯ୍ୟନ୍ତ ପ୍ରଥମ ବଂଧୁଙ୍କୁ ଅପେକ୍ଷା କରିବାକୁ ହେବ ।

୩ । ଅନ୍ୟ କୌଣସିପ୍ରକାର ଉତ୍ତର ଏ ବିଭାଗରୁ ଦିଆଯିବ ନାହିଁ ।

---

## କୁପନ ( ପତ୍ରବଂଧୁ ବିଭାଗ )

ନାମ—

ବର୍ତ୍ତମାନ ଠିକଣା—

ବୟସ—

କିପରି ବଂଧୁ ଚାହାନ୍ତି—

---

(ଦୟାକରି ନିର୍ଭୁଲ ଭାବରେ ପୂରଣ କରିବେ ।)

# ବଂଧୁ ବିଭାଗ C/o Sansar

ଆମ୍ଭମାନଙ୍କର ଅନେକ ପାଠକ ପାଠିକା ବନ୍ଧୁବିଭାଗର ପରିସରକୁ ଆହୁରି ବଢ଼ାଇ ସାମାଜିକ ବନ୍ଧୁତାର ସୁବିଧା କରାଇବା ଦିଗରେ ସଂସାର କିପରି ସାହାଯ୍ୟ କରିପାରେ ପଚାରିଛନ୍ତି । ଆଜିକାଲି ଅନେକ ପିତାମାତା ତାଙ୍କର ସନ୍ତାନମାନଙ୍କୁ ଯେ କୌଣସିପ୍ରକାରେ ବିବାହ ବନ୍ଧନରେ ଛନ୍ଦି ଦେଇ ନିଜର ଜଘନ୍ୟ ସ୍ୱାର୍ଥଲିପ୍ସା କିପରି ପୂରଣ କରୁଛନ୍ତି ଏବଂ ଏହାରି ଫଳରେ କେତେ ଦାମ୍ପତ୍ୟ ଜୀବନ ଦୁଃଖମୟ ହେଉଛି, ତାହା କାହାରିକୁ ଅବିଦିତ ନାହିଁ । ଏହି ବିଭତ୍ସ ବିକାକିଣା ପ୍ରଥାର ବିଲୋପସାଧନ ପ୍ରତ୍ୟେକ ବିବେକୀ ନାଗରିକର କାମ୍ୟ ହେଲେହେଁ କେବଳ ଦେଶର ଶିକ୍ଷିତ ଯୁବକ ଯୁବତୀହିଁ ଏହାର ମୂଳୋତ୍ପାଟନ କରିପାରନ୍ତି, ଅନ୍ୟ କେହି ନୁହେଁ । ତେଣୁ ଏ ଦିଗରେ ଆମର କର୍ତ୍ତବ୍ୟ ସୀମାବଦ୍ଧ । ପତ୍ରବନ୍ଧୁ ବିଭାଗ ପରି ସଂସାର କେବଳ ଦୁଇବନ୍ଧୁଙ୍କ ମଧ୍ୟରେ ସମ୍ପର୍କ ସ୍ଥାପନ ଦିଗରେ ସାହାଯ୍ୟ କରିପାରେ ।

**ବର୍ତ୍ତମାନ ପାଇଁ ବ୍ୟବସ୍ଥା**—କେବଳ ପତ୍ରଦ୍ୱାରା ବିବାହଯୋଗ୍ୟ ଯୁବକଯୁବତୀମାନଙ୍କର ନାମ ଧାମ ଓ ଆବଶ୍ୟକ ବିବରଣ ଟ ୧୯ (ଏକଟଙ୍କା) ଫିସ୍‌ସହ ଗ୍ରହଣ କରାଯିବ । ଏ ସମ୍ପର୍କରେ ଅନ୍ୟ କୌଣସି ପ୍ରଶ୍ନୋତ୍ତର ଦେବା ବା ଦାୟିତ୍ୱ ତୁଲାଇବା ଏ ବିଭାଗର କାର୍ଯ୍ୟ ନୁହେଁ । ଉପଯୁକ୍ତ ବର ବା କନ୍ୟାଙ୍କର ସନ୍ଧାନ ମିଳିଲେ ଏ ବିଭାଗ ସଂପୃକ୍ତ ଅପର ପକ୍ଷକୁ କେବଳ ଠିକଣାମାନ ଯୋଗାଇ ଦେବେ ।

ଆବଶ୍ୟକ ବିବରଣ ପତ୍ରଦାତାଙ୍କ ଛଡ଼ା ଆଉ କାହାକୁ ଜଣାଇ ଦିଆଯିବ ନାହିଁ ।

ଏ ସମ୍ପର୍କୀୟ କୌଣସି ନାମ ବା ଠିକଣା ଏ ପତ୍ରିକାରେ ପ୍ରକାଶିତ ହେବ ନାହିଁ ।

( ଏ ବିଷୟରେ ଯେ କୌଣସି ପ୍ରସ୍ତାବ ପାଇଲେ ପରସଂଖ୍ୟାରେ ଆଲୋଚନା କରିବୁ । )

**ନିମ୍ନ ବିବରଣ ଆବଶ୍ୟକ**—

ନାମ, ବୟସ, ଯୋଗ୍ୟତା, ପିତାଙ୍କ ନାମ, ଜାତି, ବାସସ୍ଥାନ, ବର୍ତ୍ତମାନ ଠିକଣା, ବର୍ତ୍ତମାନ କଣ କରନ୍ତି, କିପରି ବଂଧୁ ଚାହାନ୍ତି ।

ଦୟାକରି ନିର୍ଭୁଲ ବିବରଣ ଦେବେ ।

Printed & Published by Sri R. K. Nanda B. A. D. Ed. at the Parijat Press,
Telengabazar, Cuttack-1—1955.

## 'ସଂସାର'ର ନିୟମାବଳୀ

୧ । ଏହା ପ୍ରତି ଇଂରାଜି ମାସ ତା ୩ ରିଖରେ ପ୍ରକାଶିତ ହେବ ।

୨ । ଚିଠିପତ୍ର ବା ଟଙ୍କା ପଠାଇଲାବେଳେ ଦୟାକରି ଗ୍ରାହକ ନମ୍ବର ଉଲ୍ଲେଖ କରିବେ ।

୩ । ପତ୍ରିକାପାଇଁ ଲେଖା ପଠାଇବାବେଳେ ମନେ ରଖିବେ ଆମେ ସଂକ୍ଷିପ୍ତ ତଥ୍ୟମୂଳକ ଲେଖା, ହାସ୍ୟରସାତ୍ମକ ଗଳ୍ପ ଓ ପଦ୍ୟକୁ ବେଶୀ ପସନ୍ଦ କରୁ । ଅପ୍ରକାଶିତ ଲେଖା ଫେରାଇ ଦିଆଯାଏ ନାହିଁ ।

୪ । ବିଜ୍ଞାପନ ଓ ଏଜେନ୍ସି ପାଇଁ ପରିଚାଳକଙ୍କୁ ଲେଖନ୍ତୁ ।

୫ । ବାର୍ଷିକ ମୂଲ୍ୟ ଅଗ୍ରୀମ ଦେୟ, ନମୁନା ଖଣ୍ଡିକ ପାଇଁ ଚାରିଅଣାର ଡାକଟିକଟ ପଠାଇବେ ।

୬ । ପତ୍ରିକା ଭି. ପି. ରେ ପଠାଇବାକୁ ଅନୁରୋଧ କରିବେ ନାହିଁ ।

୭ । ଯାବତୀୟ ଚିଠିପତ୍ର ଓ ଟଙ୍କା କେବଳ "ସଂସାର, ତେଲେଙ୍ଗାବଜାର, କଟକ-୧" ଠିକଣାରେ ପଠାଇବେ ।

ପରିଚାଳନା ସମ୍ପାଦକ—**ଶ୍ରୀ ଭଗବାନ ଷଡ଼ଙ୍ଗୀ**